# ସୂଚୀ

# ସମ୍ବିଧାନର ମୂଲ୍ୟ ଓ ନାଗରିକ ଅଧିକାର

ଅଧ୍ୟାପକ ବିଶ୍ୱରଂଜନ

**ଗୋ**ଟିଏ ସମ୍ବିଧାନ ନଥାଇ କୌଣସି ରାଷ୍ଟ୍ରର ପରିଚାଳନା ଓ ଶାସନ କଳ୍ପନା କରାଯାଇ ପାରିବ ନାହିଁ । କାରଣ ଯେ କୌଣସି ରାଷ୍ଟ୍ର ହେଉଛି ଆଇନର ଶାସନ ପାଇଁ ଏକ ସଂଗଠନ । ଆଇନ ନଥିଲେ ଶୃଙ୍ଖଳା ରହିବ ନାହିଁ । ଶୃଙ୍ଖଳା ନରହିଲେ ଅରାଜକତା ଲାଗି ରହିବ । ଅରାଜକତା ବ୍ୟାପିଲେ ସ୍ଥିତି ବିପନ୍ନ ହୋଇଯିବ । ନାଗରିକ ତା'ର ନ୍ୟାୟ୍ୟ, ମୌଳିକ ଅଧିକାରରୁ ବଞ୍ଚିତ ହୋଇଯିବ । ତେଣୁ ଏକ ଆଦର୍ଶ ରାଷ୍ଟ୍ର ଗଠନ ଲାଗି ଆଦର୍ଶ ସମ୍ବିଧାନର ଆବଶ୍ୟକତା ରହିଛି । ବିଶେଷ କରି ଗଣତନ୍ତ୍ରକୁ ଏକଶାସନବ୍ୟବସ୍ଥା ରୂପେ ଗ୍ରହଣ କରି ନେଇଥିବା ରାଷ୍ଟ୍ର ପାଇଁ ସମ୍ବିଧାନର ଆବଶ୍ୟକତା ଏକାନ୍ତ ଜରୁରୀ । ଏକ ଏକଛତ୍ରବାଦୀ ରାଷ୍ଟ୍ର ବା ସ୍ୱେଚ୍ଛାଚାରୀ ଶାସକ ପାଇଁ ସମ୍ବିଧାନର କୌଣସି ମୂଲ୍ୟ ନଥାଇ ପାରେ । ସେଠି ଶାସକର ମୁଖ ନିଃସୃତ ବାଣୀ ହିଁ ସେ ରାଷ୍ଟ୍ରପାଇଁ ଶେଷକଥା ହୋଇପାରେ । ମାତ୍ର ସମ୍ବିଧାନର ମନ୍ତ୍ର ଉଚ୍ଚାରଣ ବିନା ଗଣତନ୍ତ୍ରର ଅଭିଷେକ ଉତ୍ସବ ଆଦୌ ସମ୍ଭବପର ନୁହେଁ । ସେଥିପାଇଁ ରାଷ୍ଟ୍ର ବିଜ୍ଞାନର ଆଦି ଗୁରୁ, ଗ୍ରୀକ୍ ଦାର୍ଶନିକ ଏରିଷ୍ଟୋଟଲ୍ ଯଥାର୍ଥରେ କହିଥିଲେ- 'ସମ୍ବିଧାନର ଶାସନଦ୍ୱାରା ବଞ୍ଚିବାକୁ ଦାସତ୍ୱ ରୂପେ ବିବେଚନା ନକରି ମୁକ୍ତିର କ୍ରିୟାରୂପେ ଗ୍ରହଣ କରିବା ଉଚିତ୍ ।' କାରଣ ଗୋଟିଏ ସମ୍ବିଧାନ ସବୁବେଳେ ବ୍ୟକ୍ତିକୁ ବ୍ୟକ୍ତି ସହିତ ଏବଂ ରାଷ୍ଟ୍ର ସହିତ ଯୁକ୍ତ କରିଦିଏ । ମୁକ୍ତ କରିଦିଏ ତାକୁ ତା'ର ସ୍ୱାର୍ଥପର, ସଂକୀର୍ଣ୍ଣ ମନୋଭାବର ଶୃଙ୍ଖଳ ଭିତରୁ । ଏକରାଷ୍ଟ୍ରୀୟ ଜୀବନଧାରା ପାଇଁ ସମ୍ବିଧାନ ହେଉଛି କେତେକ ନିର୍ଦ୍ଦିଷ୍ଟ ତଥା ନିର୍ଦ୍ଧାରିତ ନୀତି, ନିୟମ, ଆଦର୍ଶ ଏବଂ ଆଚାର-ବିଚାରର ସ୍ୱୀକୃତ ନିର୍ଦ୍ଦେଶନାମା । ଏହା ଲିଖିତ ହୋଇପାରେ, ଅଲିଖିତ ମଧ୍ୟ ରହିପାରେ ।



THE CONSTITUTION OF INDIA

WE, THE PEOPLE OF INDIA, having solemnly resolved to constitute India into a SOVEREIGN DEMOCRATIC REPUBLIC and to secure to all its citizens:

JUSTICE, social, economic and political;

LIBERTY of thought, expression, belief, faith and worship;

EQUALITY of status and of opportunity;

and to promote among them all

FRATERNITY assuring the dignity of the individual and the unity of the Nation;

IN OUR CONSTITUENT ASSEMBLY this twenty-sixth day of November, 1949, do HEREBY ADOPT, ENACT AND GIVE TO OURSELVES THIS CONSTITUTION.

ଭାରତର ମୂଳ ସଂବିଧାନର ଫଟୋ କପି : ଏଥିରେ ବିଶ୍ୱଭାରତୀ ଶାନ୍ତିନିକେତନର ଚିତ୍ରଶିଳ୍ପୀ ନନ୍ଦଲାଲ ବୋଷ ଓ ଅନ୍ୟାନ୍ୟ ଚିତ୍ରଶିଳ୍ପୀମାନଙ୍କର ଚିତ୍ରାଙ୍କନ ନିହିତ ।

ଭାରତର ସମ୍ବିଧାନ ହେଉଛି ପୃଥିବୀର ସର୍ବବୃହତ୍ ଲିଖିତ ସମ୍ବିଧାନ । ଅପରପକ୍ଷରେ ଭାରତ ଶତାଧିକ ବର୍ଷକାଳ ଯେଉଁ ଦେଶର ଶାସନାଧୀନ ହୋଇ ରହିଥିଲା ଏବଂ ଯେଉଁ ଦେଶର ଶାସନ ବ୍ୟବସ୍ଥାର ଆଧାରଶିଳା ଉପରେ ମୁଖ୍ୟତଃ ନିଜ ସମ୍ବିଧାନ ପ୍ରସ୍ତୁତ କଲା, ସେହି ଗ୍ରେଟ୍ ବ୍ରିଟେନରେ ସମ୍ବିଧାନ ବୋଲି କୌଣସି ଦଲିଲ ଖୋଜିଲେ ମିଳିବ ନାହିଁ । କାରଣ ସେ ଦେଶରେ କୌଣସି ସମ୍ବିଧାନ କେବେ ଲେଖାଯାଇ ନାହିଁ । ସମ୍ବିଧାନ ପ୍ରଣୟନ କରିବା ପାଇଁ ଭାରତ କିମ୍ବା ଅନ୍ୟ ଦେଶ ଭଳି ସେଠାରେ କୌଣସି ସଭା, ସମ୍ମିଳନୀ ମଧ୍ୟ କେବେ ବସି ନାହିଁ । ସମୟ ସ୍ରୋତରେ, ସ୍ୱାଭାବିକ ବିକାଶଧାରାରେ ଗଢ଼ି ଉଠିଥିବା କେତେ ପ୍ରଥା, ପରମ୍ପରା, ଚଳଣିର ସମାହାରରେ ତାହାର ସମ୍ବିଧାନ ରୂପ ପାଇଛି । ଅବଶ୍ୟ ସେଥିସହିତ ମିଶି ରହିଛି ପାର୍ଲାମେଣ୍ଟଦ୍ୱାରା ପ୍ରଣୀତ କେତେକ ଆଇନ - ଯାହାକି ବ୍ରିଟିଶ ସମ୍ବିଧାନର ଲିଖିତ ଅଂଶ ରୂପେ ଗ୍ରହଣ କରାଯାଇପାରେ । ଏଇଠି କହିରଖେ ଯେଉଳି କୌଣସି ରାଷ୍ଟ୍ରର ସମ୍ବିଧାନ ଲିଖିତ ହେବ କି ଅଲିଖିତ ରହିବ - ତା'ର କୌଣସି ଧରାବନ୍ଧା ନିୟମ ନାହିଁ, ସେହିଭଳି କୌଣସି ସମ୍ବିଧାନ କେବେ ସମ୍ପୂର୍ଣ୍ଣ ଲିଖିତ କିମ୍ବା ସମ୍ପୂର୍ଣ୍ଣ ଅଲିଖିତ ମଧ୍ୟ ନୁହେଁ । ପରମ୍ପରା ଆଧାରିତ ବ୍ରିଟେନ୍‌ର ସାମ୍ବିଧାନିକ ବ୍ୟବସ୍ଥାରେ ଯେଉଳି କିଛି ଲିଖିତ ଆଇନକାନୁନ୍‌ର ମିଶ୍ରଣ ଘଟିଛି, ଏକ ବୃହତମ ଲିଖିତ ସମ୍ବିଧାନ ଥାଇ ସୁଦ୍ଧା ଭାରତର ଶାସନ ବ୍ୟବସ୍ଥାରେ କେତେକ ପରମ୍ପରା ସ୍ୱାଭାବିକ ଭାବରେ ଅଙ୍ଗୀଭୂତ ହୋଇଯାଇଛି ।

ସୁତରାଂ ସମ୍ବିଧାନର ମୂଲ୍ୟ ଓ ମହତ୍ୱ ରହିଛି, ଏହାର ପରିପାଳନରେ, ଏଥିରେ ଉଚ୍ଚାରିତ ଆଦର୍ଶକୁ କାର୍ଯ୍ୟକାରୀ କରିବାରେ । ଏହାର ଆକାର ପ୍ରକାର ଦୀର୍ଘ ହୋଇଗଲେ, ସବୁକଥା ଏଥିରେ ବିସ୍ତାରିତ ଭାବରେ ଲେଖା ହୋଇଗଲେ ଯେ ସମ୍ବିଧାନର ଶାସନ ବଳବତ୍ତର ରହିବ ଏଭଳି କିଛି କଥା ନାହିଁ । ବଡ଼ କଥା ହେଲା, ବିଧି-ବିଧାନ-ଦ୍ୱାରା ଶାସିତ ହେବାର ମନୋବୃତ୍ତି । ବ୍ରିଟିଶ ସମ୍ବିଧାନ ମୁଖ୍ୟତଃ ଅଲିଖିତ ହେଲେ ହେଁ, ସେଠାରେ ସଂସଦୀୟ ଗଣତନ୍ତ୍ରର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ବୃଦ୍ଧି ପାଇବାରେ ଲାଗିଛି ସିନା କମିବାର କୌଣସି ଆଶଙ୍କା କେବେ ଦେଖାଦେଇ ନାହିଁ । ଏପରିକି ରାଷ୍ଟ୍ରମୁଖ୍ୟ ଭାବରେ ବଂଶାନୁକ୍ରମିକ ନୀତିରେ ଜଣେ ରାଜା ବା ରାଣୀ ଅବସ୍ଥାପିତ ହେଉଥିଲେ ହେଁ ତାହାଦ୍ୱାରା ଗଣତନ୍ତ୍ରର ମୂଲ୍ୟ ଓ ମର୍ଯ୍ୟାଦା କେବେ ମ୍ଳାନ ପଡ଼ିନାହିଁ କିମ୍ବା ନାଗରିକଙ୍କ ଅଧିକାରପ୍ରତି କୌଣସି ବିପଦ ମଧ୍ୟ ସୃଷ୍ଟି ହୋଇନାହିଁ । ଗଣତନ୍ତ୍ର ଓ ରାଜତନ୍ତ୍ରର ଅପୂର୍ବ ମିଳନ ହେଉଛି ବ୍ରିଟିଶ ସାମ୍ବିଧାନିକ ବ୍ୟବସ୍ଥାର ଫଳଶ୍ରୁତି । ସେହିଭଳି ସମଗ୍ର ବିଶ୍ୱରେ ଏକ ବୃହତ୍ ଶକ୍ତି ରୂପେ ବିବେଚିତ ଯୁକ୍ତରାଷ୍ଟ୍ର ଆମେରିକାର ସମ୍ବିଧାନ ହେଉଛି ସବୁଠାରୁ କ୍ଷୁଦ୍ର । ମାତ୍ର ସାତଗୋଟି ସରଳଧାରାର ସମାହାରରେ ଲେଖାଯାଇଛି ଆମେରିକା ସମ୍ବିଧାନ । ତଥାପି ଏହାର ଗଣତନ୍ତ୍ର କକ୍ଷଚ୍ୟୁତ ବା ଲକ୍ଷ୍ୟଚ୍ୟୁତ ହୋଇନାହିଁ । ନାଗରିକମାନଙ୍କର ଅଧିକାର ବେଶ୍ ସୁରକ୍ଷିତ ରହିଛି, ବରଂ ଏହାର ପରିସର କ୍ରମଶଃ ବିସ୍ତାରିତ ହେବାରେ ଲାଗିଛି । ଭାରତରେ ମାତ୍ର ପଚାଶବର୍ଷର ସାମ୍ବିଧାନିକ ଶାସନରେ ସମ୍ବିଧାନଟି ଯେତେଥର ସଂଶୋଧିତ ହେଲାଣି, ଆମେରିକାରେ ଦୀର୍ଘ ଦୁଇଶହ ବର୍ଷରୁ ଊର୍ଦ୍ଧ୍ୱ ସମ୍ବିଧାନ ତା'ର ଅଧାରେ ମଧ୍ୟ ପହଞ୍ଚି ପାରିନାହିଁ । ସେଠାରେ ମଧ୍ୟ ଦଳୀୟ ଶାସନରେ ପରିବର୍ତ୍ତନ ହୋଇଛି ଏବଂ ହେଉଛି । ମାତ୍ର ସମ୍ବିଧାନକୁ ସେଠାରେ ବ୍ୟକ୍ତିଗତ ଇଚ୍ଛା-ଅନିଚ୍ଛାର ବା ଦଳୀୟ ନୀତି-ଅନୀତିର ଖେଳଣା ଭାବରେ ବ୍ୟବହାର କରାଯାଇ ନାହିଁ । ମନେ ରଖିବାକୁ ହେବ, ଯେକୌଣସି ଗଣତାନ୍ତ୍ରିକ ରାଷ୍ଟ୍ର ପାଇଁ ସମ୍ବିଧାନ ହେଉଛି ଏକ ପବିତ୍ର ଦଲିଲ୍ । ଏହାକୁ ବେଶ୍ ସତର୍କତାର ସହିତ ବ୍ୟବହାର କରିବାକୁ ପଡ଼ିବ । ଏଥିରେ କୌଣସି ଯୋଗ-ବିଯୋଗ ବା ଆନୁଷଙ୍ଗିକ ପରିବର୍ତ୍ତନ ରାଷ୍ଟ୍ରୀୟ ସ୍ୱାର୍ଥ ଅନୁକୂଳ ଆବଶ୍ୟକତାକୁ ଦୃଷ୍ଟିରେ ରଖି କରିବାକୁ ହେବ । ତା' ନହେଲେ ଏହା ତା'ର ମୂଲ୍ୟ ହରାଇ ବସିବ । ନାଗରିକମାନଙ୍କର ସମ୍ବିଧାନ ଉପରେ ଆସ୍ଥା ଯେପରି ଅତୁଟ ରହିବ, ସେଥିଲାଗି ସମ୍ବିଧାନର ଘନ ଘନ ପରିବର୍ତ୍ତନ ଯେଭଳି ଅନାବଶ୍ୟକ, ସେହିଭଳି ଏକ ପରିବର୍ତ୍ତନଶୀଳ ଦେଶର ଜନସାଧାରଣଙ୍କ ଆବଶ୍ୟକତାକୁ ଚାହିଁ ସମ୍ବିଧାନର ପରିବର୍ତ୍ତନ ଅବଶ୍ୟମ୍ଭାବୀ । ସମ୍ବିଧାନ ଗତିଶୀଳ ଓ ଯୁଗୋପଯୋଗୀ ନହୋଇ ସ୍ଥାଣୁ ହୋଇ ରହିଗଲେ ମାକ୍‌ଲେଙ୍କ ନିୟମ ଅନୁସାରେ ଏକ ବିପ୍ଳବର ସୂତ୍ରପାତ ହୋଇ ସମ୍ବିଧାନ ଧ୍ୱଂସ ପାଇଯିବ ।

ଭାରତରେ ସେଥିପାଇଁ ସମ୍ବିଧାନ ପ୍ରସ୍ତୁତି ସମୟରେ ଏହାର ପରିବର୍ତ୍ତନର ଆବଶ୍ୟକତାକୁ ସ୍ୱୀକାର କରାଯାଇଥିଲା । ପଣ୍ଡିତ ଜବାହରଲାଲ ନେହରୁ ଶାସନ ବିଧାୟକ ସଭାରେ କହିଥିଲେ ଯେ- 'ସମ୍ବିଧାନରେ ଚିରସ୍ଥାୟୀ ବ୍ୟବସ୍ଥା କିଛି ରହି ନପାରେ । ସବୁକିଛି କଠିନ ଓ ସ୍ଥାୟୀ ହୋଇ ରହିଲେ ଦେଶର ପ୍ରଗତି ଅସମ୍ଭବ । ସମଗ୍ର ପୃଥିବୀ ଯେତେବେଳେ ଆନ୍ଦୋଳନର ସମ୍ମୁଖୀନ ଏବଂ ଆମେ ଯେତେବେଳେ ଦ୍ରୁତ ପରିବର୍ତ୍ତନ ମଧ୍ୟରେ ଗତି କରୁଛୁ, ଆଜି ଆମେ ଯାହା କରୁଛୁ, ଆସନ୍ତା କାଲିକୁ ତାହା ସଂପୂର୍ଣ୍ଣ ଅକାମୀ ହୋଇଯାଇପାରେ । ତେଣୁ ସମ୍ବିଧାନ କେତେକାଂଶରେ କମନୀୟ ହେବା ଉଚିତ୍ ।' ଅନୁରୂପ ଅଭିବ୍ୟକ୍ତି ଥିଲା ଡଃ ଆମ୍ବେଦକରଙ୍କର । ସେ କହିଥିଲେ ଯେ, 'ଶାସନ ବିଧାୟକ ସଭା ସମ୍ବିଧାନରେ ଏକ ଚୂଡ଼ାନ୍ତ ମୋହର ମାରି ଜନସାଧାରଣଙ୍କୁ ସମ୍ବିଧାନର ଅଧିକାରରୁ ବଞ୍ଚିତ କରିନାହିଁ । ଯେତେଦିନ ପର୍ଯ୍ୟନ୍ତ ସରକାର ଜନସାଧାରଣଙ୍କ ନିକଟରେ ଦାୟୀ ରହି ଶାସନ କାର୍ଯ୍ୟ ପରିଚାଳନା କରୁଥିବେ, ସେତେଦିନ ପର୍ଯ୍ୟନ୍ତ ସମ୍ବିଧାନର ପରିବର୍ତ୍ତନ ଦେଶର ଆବଶ୍ୟକତାର ପ୍ରତିଫଳନ ବ୍ୟତୀତ ଆଉ କିଛି ନୁହେଁ ।' ଏହି ଦୃଷ୍ଟିରୁ ଭାରତରେ ସମ୍ବିଧାନର ପୁନଃ ସମୀକ୍ଷା ଲାଗି ବର୍ତ୍ତମାନର କେନ୍ଦ୍ର ସରକାର ସୁପ୍ରିମକୋର୍ଟର ଜଣେ ପୂର୍ବତନ ନ୍ୟାୟାଧୀଶଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରିଛନ୍ତି । ସମ୍ବିଧାନର ମୌଳିକ ଲକ୍ଷ୍ୟ ଓ ଆଦର୍ଶକୁ ଅକ୍ଷୁଣ୍ଣ ରଖି ଏହାକୁ ଅଧିକ ଫଳପ୍ରଦ କରାଯାଇପାରେ । ଅନାବଶ୍ୟକ, ଅପ୍ରାସଙ୍ଗିକ ବ୍ୟବସ୍ଥାକୁ ମଧ୍ୟ ବାଦ୍ ଦିଆଯାଇପାରେ ।

ସାମ୍ବିଧାନିକ ଶାସନର ପ୍ରାଣପିଣ୍ଡ ହେଲେ ଜନସାଧାରଣ । ଦେଶର ନାଗରିକ । ସେମାନଙ୍କର ଅଧିକାରକୁ ସଂରକ୍ଷିତ ଓ ସୁରକ୍ଷିତ କରି ରଖିବାରେ ସମ୍ବିଧାନର ମୂଲ୍ୟ ଓ ମହତ୍ତ୍ୱ ପ୍ରକାଶ ପାଇଥାଏ । ଶାସନ ପାଇଁ ଆଇନ ପ୍ରଣୟନ କରୁଥିବା ବ୍ୟବସ୍ଥାପିକା ସଭା ଏବଂ ଆଇନକୁ କାର୍ଯ୍ୟରେ ପରିଣତ କରୁଥିବା କାର୍ଯ୍ୟପାଳିକା ବା ଶାସକବର୍ଗଙ୍କ ସେମାନଙ୍କ ସୀମା ସଂପର୍କରେ ସଚେତନ କରି ଦେଇଥାଏ ସମ୍ବିଧାନ । ମାତ୍ର ସେମାନେ ସୀମା ବହିର୍ଭୂତ କାର୍ଯ୍ୟ କଲେ କିମ୍ବା କ୍ଷମତାର ଆଧିପତ୍ୟ ବଳରେ ସମ୍ବିଧାନର ବିଧିବିଧାନକୁ ଉଲ୍ଲଙ୍ଘନ କରିବାର ଉଦ୍ୟମ କଲେ, ସମ୍ବିଧାନକୁ ସୁରକ୍ଷା ଦେବ କିଏ ? ଏ ଦାୟିତ୍ୱ ବହନ କରିଥାଏ ନ୍ୟାୟପାଳିକା । ଅଗଣିତ

ସାମ୍ବିଧାନିକ ଶାସନର ପ୍ରାଣପିଣ୍ଡ ହେଲେ ଜନସାଧାରଣ । ଦେଶର ନାଗରିକ । ସେମାନଙ୍କର ଅଧିକାରକୁ ସଂରକ୍ଷିତ ଓ ସୁରକ୍ଷିତ କରି ରଖିବାରେ ସମ୍ବିଧାନର ମୂଲ୍ୟ ଓ ମହତ୍ତ୍ୱ ପ୍ରକାଶ ପାଇଥାଏ ।

ଜନସାଧାରଣଙ୍କର ମୌଳିକ ଅଧିକାରର ସଂରକ୍ଷକ ତଥା ସମ୍ବିଧାନର ରକ୍ଷକ ହେଉଛି ନ୍ୟାୟାଳୟ ।

ଭାରତରେ ଉଚ୍ଚତମ ନ୍ୟାୟାଳୟ ତଥା ରାଜ୍ୟର ଉଚ୍ଚ ନ୍ୟାୟାଳୟ ହିଁ ଏହି ମର୍ଯ୍ୟାଦାର ଅଧିକାରୀ । ସେହିଭଳି ଭାରତ ସମ୍ବିଧାନରେ ନାଗରିକର ଅଧିକାର ବିସ୍ତାରିତ ଭାବରେ ବର୍ଣ୍ଣନା କରାଯାଇଛି । ଏହାର ସଂପୂର୍ଣ୍ଣ ତୃତୀୟ ଭାଗଟି ମୌଳିକ ଅଧିକାର ପାଇଁ ସମର୍ପିତ । ସମସ୍ତ ମୌଳିକ ଅଧିକାରର ସୁରକ୍ଷା ପାଇଁ ସମ୍ବିଧାନର ୩୨ ଧାରାକୁ ମଧ୍ୟ ଏକ ମୌଳିକ ଅଧିକାରର ମାନ୍ୟତା ମିଳିଛି । ମାତ୍ର ଭାରତରେ ନାଗରିକର ଅଧିକାରଗୁଡ଼ିକ ସୁରକ୍ଷିତ ହେଲେ ହେଁ ନିରଙ୍କୁଶ ନୁହେଁ । ଆମେରିକାର ସମ୍ବିଧାନ ମୌଳିକ ଅଧିକାର ଉପରେ କୌଣସି ପ୍ରତ୍ୟକ୍ଷ କଟକଣା ଲାଗୁ କରିନଥିବା ସ୍ଥଳେ ଆମ ସମ୍ବିଧାନରେ ମୌଳିକ ଅଧିକାର ଉପରେ ଅଙ୍କୁଶ ଲଗାଯାଇଛି । କେତେକ ସମ୍ବିଧାନ ଦ୍ୱାରା ଏବଂ ଆଉ କେତେକ ସଂସଦ ଦ୍ୱାରା କରାଯାଉଛି । ଜାତୀୟ ଜରୁରୀ ପରିସ୍ଥିତି କାଳରେ ରାଷ୍ଟ୍ରପତି ସେଗୁଡ଼ିକ ଅସ୍ଥାୟୀ ଭାବରେ ବାତିଲ୍ କରିଦେଇ ପାରିବେ ।

ଭାରତୀୟ ସମ୍ବିଧାନରେ ନାଗରିକର ଅଧିକାର ମଧ୍ୟରେ ଅର୍ଥନୈତିକ ଅଧିକାର, ଯଥା- କାମ କରିବାର, ନିଯୁକ୍ତିର ଅଧିକାର, ବିଶ୍ରାମ ନେବାର ଅଧିକାରଗୁଡ଼ିକୁ ଅନ୍ତର୍ଭୁକ୍ତ କରାଯାଇ ନାହିଁ । ପ୍ରଦତ୍ତ ଅଧିକାରଗୁଡ଼ିକ ରାଜନୈତିକ ଗଣତନ୍ତ୍ରର ଭିତ୍ତିଭୂମି ଅବଶ୍ୟ ପ୍ରତିଷ୍ଠା କରିଛି । ମାତ୍ର ଅର୍ଥନୈତିକ ଗଣତନ୍ତ୍ର ବିନା ଯଥାର୍ଥ ଗଣତନ୍ତ୍ରର ବିକାଶ କେବେ ସମ୍ଭବ ନୁହେଁ । ତା'ଛଡ଼ା ଲୋକଙ୍କ ଅଧିକାର ଲାଗି ଉଦ୍ଦିଷ୍ଟ ସମ୍ବିଧାନ ଲୋକଙ୍କ ଭାଷାରେ ଅର୍ଥାତ୍ ସରଳ ଭାବରେ ଲେଖାଯିବା ଉଚିତ - ଯାହା ସେମାନେ ସହଜରେ ପଢ଼ି ବୁଝିପାରିବେ ଏବଂ କାହାର ସହାୟତା ବିନା ନିଜ ଅଧିକାର ଲାଗି ନିଜେ ଲଢ଼ି ପାରିବେ । ଭାରତରେ ସମ୍ବିଧାନ ପ୍ରଦତ୍ତ ନାଗରିକମାନଙ୍କ ଅଧିକାର ଏ ଦୃଷ୍ଟିରୁ ସମାଲୋଚନାମୁକ୍ତ ନୁହେଁ । ଏଗୁଡ଼ିକ ଏତେ କ୍ଲିଷ୍ଟ ଭାଷାରେ ଲେଖାଯାଇଛି ଯେ, ଏହାର ତର୍ଜମା ପାଇଁ ଆଇନଜୀବୀମାନଙ୍କ ସହାୟତା ନିହାତି ଆବଶ୍ୟକ । ସେଥିପାଇଁ ଆମ ସମ୍ବିଧାନର ମୌଳିକ ଅଧିକାର ଅଧ୍ୟାୟକୁ ବ୍ରିଟିଶ୍ ସମ୍ବିଧାନବିତ୍ ଆଇଭର ଜେନିଙ୍ଗସ୍ 'ଆଇନଜୀବୀଙ୍କ ଅମରାବତୀ' କହି ସମାଲୋଚନା କରିଛନ୍ତି । ତଥାପି ଆମେ କହିପାରିବା, ଆମ ସମ୍ବିଧାନର ଅସଲ ମହତ୍ତ୍ୱ ରହିଛି ଏହାଦ୍ୱାରା ସ୍ୱୀକୃତ ନାଗରିକଙ୍କ ମୌଳିକ ଅଧିକାରରେ । ଏହି ଅଧ୍ୟାୟଟି ଆମ ଗଣତନ୍ତ୍ରର ଏକ ସୁଦୃଢ଼ ପ୍ରାଚୀର ।

> ବ୍ୟକ୍ତି ଓ ରାଷ୍ଟ୍ର ମଧ୍ୟରେ, ସ୍ୱାଧୀନତା ଓ କ୍ଷମତା ମଧ୍ୟରେ ଏକ ସମନ୍ୱୟ ସ୍ଥାପନରେ ହିଁ ସମ୍ବିଧାନର ଏକ ବିଶେଷ ଭୂମିକା ରହିଥାଏ ।

କଥା ହେଲା, ପ୍ରତ୍ୟେକ ରାଷ୍ଟ୍ରରେ ଜନସାଧାରଣ ଚାହାନ୍ତି ଅଧିକ ସ୍ୱାଧୀନତା ଏବଂ ଶାସକ ଚାହାନ୍ତି ଅଧିକ କ୍ଷମତା । ବ୍ୟକ୍ତି ଓ ରାଷ୍ଟ୍ର ମଧ୍ୟରେ, ସ୍ୱାଧୀନତା ଓ କ୍ଷମତା ମଧ୍ୟରେ ଏକ ସମନ୍ୱୟ ସ୍ଥାପନରେ ହିଁ ସମ୍ବିଧାନର ଏକ ବିଶେଷ ଭୂମିକା ରହିଥାଏ । କ୍ଷମତାର ଆଧିପତ୍ୟ ବା ଉପଦ୍ରବ ଏବଂ ବ୍ୟକ୍ତି ସ୍ୱାଧୀନତାର ଯଥେଚ୍ଛାଚାରକୁ ସଂକୁଚିତ କରି ଏକ ଯଥାର୍ଥ ଲୋକାଭିମୁଖୀ ଶାସନ ପ୍ରତିଷ୍ଠା ଦିଗରେ ଏକ ସମ୍ବିଧାନ ପ୍ରୟାସ କରିଥାଏ । ଏହି ଉତ୍ତମ ସମ୍ବିଧାନଦ୍ୱାରା ହିଁ କୃତ୍ରିମ ଜଳଭଣ୍ଡାରର ଜଳ ଭଳି ଗଣତନ୍ତ୍ରକୁ ସର୍ବଦା ଶାନ୍ତ, ଶୀତଳ ରଖାଯାଇପାରିବ । ଉଭୟ ବ୍ୟକ୍ତି ଏବଂ ରାଷ୍ଟ୍ରକୁ ନିଜ ନିଜର ସୀମା ତଥା କ୍ଷେତ୍ରାଧିକାର ସଂପର୍କରେ ସଚେତନ କରିବାରେ ସମ୍ବିଧାନର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ ।

ନେତାଜୀ ନିବାସ
୧୯୯, କଂସାଇ ଝର
ୟୁନିଟ୍-୬, ଭୁବନେଶ୍ୱର-୧

---

# କେନ୍ଦ୍ର ପଞ୍ଚାୟତିରାଜ ମନ୍ତ୍ରାଳୟର ଦୁଇ ଉପଦେଷ୍ଟା ମନ୍ତ୍ରୀଙ୍କୁ ଭେଟିଲେ

ଭାରତ ସରକାରଙ୍କ ପଞ୍ଚାୟତିରାଜ ମନ୍ତ୍ରଣାଳୟର ଉପଦେଷ୍ଟା ଶ୍ରୀ ବଲ୍ଲଭ ଭଟ୍ଟାଚାର୍ଯ୍ୟ ଏବଂ ଶ୍ରୀ ଅନୀଶ ଗାନ୍ଧୀ ଗତ ଜାନୁଆରୀ ମାସରେ ରାଜ୍ୟ ପଞ୍ଚାୟତିରାଜ ଓ ସଂସଦୀୟ ବ୍ୟାପାର ମନ୍ତ୍ରୀ ଶ୍ରୀ ରଘୁନାଥ ମହାନ୍ତିଙ୍କୁ ତାଙ୍କ ସଚିବାଳୟ ପ୍ରକୋଷ୍ଠଠାରେ ସାକ୍ଷାତ କରିଥିଲେ ।

ରାଜ୍ୟର ପଞ୍ଚାୟତିରାଜ ଅନୁଷ୍ଠାନର ସଦସ୍ୟମାନଙ୍କ ମଧ୍ୟରେ ଏଚ୍.ଆଇ.ଭି. ଓ ଏଡ୍ସ ସଂପର୍କରେ ସଚେତନତା ବୃଦ୍ଧି ନିମନ୍ତେ ଏହି ସାକ୍ଷାତକାର ସମୟରେ ଆଲୋଚନା ହୋଇଥିଲା । ଏହି ସଚେତନତା ବୃଦ୍ଧି ନିମନ୍ତେ ରାଜ୍ୟ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ଓ ପଞ୍ଚାୟତିରାଜ ମନ୍ତ୍ରୀ ମିଳିତ ଭାବେ ଏକ ଅପିଲ୍ କରିବେ ବୋଲି ସାକ୍ଷାତ ଆଲୋଚନାରୁ ଜଣାପଡ଼ିଥିଲା ।

ସେହି ଆଲୋଚନା ସମୟରେ ପଞ୍ଚାୟତିରାଜ ବିଭାଗ କମିଶନର ତଥା ଶାସନ ସଚିବ ଶ୍ରୀ ଆର୍.ଏନ୍. ଦାଶ, ନିର୍ଦ୍ଦେଶକ ଶ୍ରୀ ଆର୍.କେ. ଚୌଧୁରୀ ଓ ସ୍ୱତନ୍ତ୍ର ପ୍ରକଳ୍ପ ନିର୍ଦ୍ଦେଶକ ଶ୍ରୀ ଶାଶ୍ୱତ ମିଶ୍ର ଉପସ୍ଥିତ ଥିଲେ ।

# ଗଣତନ୍ତ୍ରରେ ଜନସେବକ ଓ ଲୋକପାଳ

ଜଷ୍ଟିସ ଶରତଚନ୍ଦ୍ର ମହାପାତ୍ର

ଆମ ସମ୍ବିଧାନର ଏକ ଉଦ୍ଦେଶ୍ୟ ହେଉଛି ନାଗରିକମାନଙ୍କୁ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ନ୍ୟାୟ ପ୍ରଦାନ । ଏହି ବ୍ୟବସ୍ଥାକୁ ରୂପରେଖ ଦେବାପାଇଁ ଭାରତବର୍ଷରେ ଉଚ୍ଚତମ ନ୍ୟାୟାଳୟ ସ୍ଥାପିତ ହୋଇଛି । ରାଜ୍ୟମାନଙ୍କରେ ଉଚ୍ଚ ନ୍ୟାୟାଳୟ ସ୍ଥାପିତ ହୋଇ ନ୍ୟାୟ ପ୍ରଦାନ ସହ ଏହି ବ୍ୟବସ୍ଥାକୁ ପରିଚାଳନା କରୁଛି । ନିମ୍ନସ୍ତରରେ ଦେଓ୍ୱାନୀ ଓ ଫୌଜଦାରୀ ଅଦାଲତମାନ ସ୍ଥାପିତ ହୋଇଛି । ଏହି ନ୍ୟାୟ ପ୍ରଦାନ ସଂସ୍ଥାଗୁଡ଼ିକ, ପ୍ରଶାସନର ନିୟନ୍ତ୍ରଣରେ ନରହି କାର୍ଯ୍ୟକ୍ଷମ ହୁଅନ୍ତି । ପ୍ରଶାସନ କେବଳ ଆର୍ଥିକ ଓ ଆନୁଷଙ୍ଗିକ ସାହାଯ୍ୟ ପ୍ରଦାନ କରିଥାଏ । ଏହାବ୍ୟତୀତ ପ୍ରଶାସନିକ କ୍ଷେତ୍ରରେ ନ୍ୟାୟ ପ୍ରଦାନ ପାଇଁ ଉଚ୍ଚ କ୍ଷମତା ଥିବା ସଂସ୍ଥାମାନ ଗଠନ କରାଯାଇଛି । ବିଭିନ୍ନ ଶ୍ରେଣୀର ପଦବୀଧାରୀମାନେ ଆଇନର ସୁପରିଚାଳନା କରି ନ୍ୟାୟ ପ୍ରଦାନ କରିବାପାଇଁ ମଧ୍ୟ ଅଧିକାର ଦିଆଯାଇଛି । କୌଣସି ସମାଧାନରେ ବ୍ୟକ୍ତି ଅସନ୍ତୋଷ ହେଲେ, ତା' ବିରୁଦ୍ଧରେ ଉପର ସ୍ତରରେ ଆପତ୍ତି କରି ନ୍ୟାୟ ପ୍ରାର୍ଥନା କରିବା ବ୍ୟବସ୍ଥା ମଧ୍ୟ ରହିଛି । ନ୍ୟାୟ ପ୍ରଦାନ ପାଇଁ ବିଭିନ୍ନ ସମୟରେ ଆବଶ୍ୟକତା ଅନୁଭବ କରି ନୂତନ ନ୍ୟାୟିକ ସଂସ୍ଥାମାନ ଗଠନ କରାଯାଉଛି । ଏଥିରୁ କେତେକ ସାମୟିକ ଓ ଆଉ କେବେ ଚିରସ୍ଥାୟୀ ସଂସ୍ଥା ବ୍ୟବସ୍ଥା ସବୁର ପରିବର୍ତ୍ତନ କରି ସମ୍ବିଧାନର ଲକ୍ଷ୍ୟ ପୂରଣ କରାଯାଇପାରୁଛି ।

ଗଣତନ୍ତ୍ରର ମୂଳମନ୍ତ୍ର ହେଉଛି- ଶାସନ ଲୋକମାନଙ୍କର, ଲୋକମାନଙ୍କଦ୍ୱାରା ଓ ଲୋକମାନଙ୍କ ପାଇଁ । ସମସ୍ତ ଶାସନ ପରିଚାଳନା ଏହି ଉଦ୍ଦେଶ୍ୟ ସାଧନ କରୁଥିବାରୁ, କେତେକ ବୁଦ୍ଧିଜୀବୀ ଅନୁଭବ କଲେ ଯେ ଏହି ବ୍ୟବସ୍ଥାର ସଦୁପଯୋଗ ସମସ୍ତ ନାଗରିକମାନେ କରିପାରୁ ନଥିବାରୁ ଜନଅସନ୍ତୋଷ ବୃଦ୍ଧି ପାଉଛି ଓ ଏହି ଅସନ୍ତୋଷ ଘନୀଭୂତ ହେଲେ, ତାହା ଗଣତନ୍ତ୍ର ପାଇଁ କ୍ଷତିକାରକ ହେବ । ଏହାର ଗୁରୁତ୍ୱ ଅନୁଭବ କରି କେନ୍ଦ୍ର ସରକାର ମୋରାରଜୀ ଦେଶାଇଙ୍କ ଅଧକ୍ଷତାରେ ଏକ ଆୟୁକ୍ତ ଗଠନ କରିଥିଲେ ଓ ଏହି ଆୟୁକ୍ତ ଆମ ଗଣନ୍ତ୍ରରେ ଲୋକପାଳ ସଂସ୍ଥା ଗଠନ କରିବାକୁ ପରାମର୍ଶ ଦେଇଥିଲେ । ଏହି ପରାମର୍ଶ ଅନୁସାରେ କେନ୍ଦ୍ରରେ ଜଣେ ଲୋକପାଳ ନିଯୁକ୍ତ ହେବାର ବ୍ୟବସ୍ଥା ରହିଲା । ଏହି ପଦବୀ ଉଚ୍ଚତମ ନ୍ୟାୟାଳୟର ପ୍ରଧାନ ବିଚାରପତିଙ୍କର ପଦମର୍ଯ୍ୟାଦା ପାଇବେ । ସେ କେନ୍ଦ୍ର ଓ ରାଜ୍ୟମାନଙ୍କର ମନ୍ତ୍ରୀ ଓ ସଚିବମାନଙ୍କର କାର୍ଯ୍ୟର ଅନୁସନ୍ଧାନ କରି ସରକାରଙ୍କୁ ପରାମର୍ଶ ଦେବେ । ପ୍ରତ୍ୟେକ ରାଜ୍ୟରେ ଜଣେ ଲେଖାଏଁ ଲୋକାୟୁକ୍ତ ରହିବେ ଓ ସେମାନେ ରାଜ୍ୟ ଉଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତିଙ୍କ ପଦମର୍ଯ୍ୟାଦା ପାଇବେ । ସେ ରାଜ୍ୟର ଅନ୍ୟାନ୍ୟ ଜନସେବକଙ୍କର କାର୍ଯ୍ୟର ଅନୁସନ୍ଧାନ କରି ରାଜ୍ୟ ସରକାରଙ୍କୁ ପରାମର୍ଶ ଦେବେ । ଏହି ପରାମର୍ଶ ଅନୁସାରେ ସରକାର ବ୍ୟକ୍ତିବିଶେଷଙ୍କର ଅସନ୍ତୋଷ ଦୂର କରିବେ । ଏହି ସଂସ୍ଥାଗୁଡ଼ିକ ଅନ୍ୟ ନ୍ୟାୟାଳୟର ଆନୁଷଙ୍ଗିକ ବ୍ୟବସ୍ଥା ଭାବେ କାର୍ଯ୍ୟକାରୀ ହେବ ଓ ସଂସ୍ଥାଗୁଡ଼ିକ ଉପରେ ପ୍ରଶାସନର କର୍ତ୍ତୃତ୍ୱ ରହିବ ନାହିଁ ।

କେନ୍ଦ୍ର ସରକାର ଚେଷ୍ଟା କରି ମଧ୍ୟ ଏହି ସଂସ୍ଥା ଗଠନ ପାଇଁ ଆଇନ ପ୍ରଣୟନ କରି ନପାରିବାରୁ, ଓଡ଼ିଶାରେ ଏହି ସଂସ୍ଥା ଗଠନ ପାଇଁ ରାଜ୍ୟ ବିଧାନସଭା ଏକ ଆଇନ ୧୯୭୦ ମସିହାରେ ପ୍ରଣୟନ କଲେ । ତାହା ୧୯୭୧ ମସିହାରେ ରାଷ୍ଟ୍ରପତିଙ୍କ ଅନୁମୋଦନ ଲାଭ କଲା । କିନ୍ତୁ ୧୯୮୩ ମସିହା ପର୍ଯ୍ୟନ୍ତ ତାହା କାର୍ଯ୍ୟକାରୀ ହେଲା ନାହିଁ । ତେଣୁ ଓଡ଼ିଶାବାସୀ ଏହି ସଂସ୍ଥାର ଉପଯୋଗ କରିପାରିଲେ ନାହିଁ । ସରକାର ୧୯୮୩ ମସିହାରେ ଏହି ଆଇନକୁ କାର୍ଯ୍ୟକାରୀ କଲେ ଓ ସଂସ୍ଥାର ମୁଖ୍ୟଙ୍କୁ ଲୋକପାଳ ଭାବେ ନାମିତ କଲେ । ତାଙ୍କର ଦାୟିତ୍ୱ ହେଲା, ଅସନ୍ତୁଷ୍ଟ ବ୍ୟକ୍ତିବିଶେଷ ମୁଖ୍ୟମନ୍ତ୍ରୀଙ୍କଠାରୁ ଆରମ୍ଭ କରି ସମସ୍ତ ମନ୍ତ୍ରୀ ଓ ସଚିବମାନଙ୍କର କାର୍ଯ୍ୟ ସମ୍ବନ୍ଧରେ ଅଭିଯୋଗ କଲେ, ସେ ସବୁର ଅନୁସନ୍ଧାନ କରି ଉଚିତ କ୍ଷେତ୍ରରେ ସେ ସରକାରଙ୍କୁ ପରାମର୍ଶ ଦେବେ । ଆଇନର ବ୍ୟବସ୍ଥା ଅନୁସାରେ ଲୋକାୟୁକ୍ତ ନିଯୁକ୍ତ ହେଲେ ସେ ଅନ୍ୟାନ୍ୟ ଜନସେବକମାନଙ୍କର କାର୍ଯ୍ୟ ସମ୍ବନ୍ଧରେ ଅଭିଯୋଗ ପାଇ ଅନୁସନ୍ଧାନ କରିବେ । ଯେ ପର୍ଯ୍ୟନ୍ତ ଲୋକାୟୁକ୍ତ ନିଯୁକ୍ତ ହୋଇନାହାନ୍ତି, ସେ ପର୍ଯ୍ୟନ୍ତ ଲୋକପାଳ ସମସ୍ତ ଅଭିଯୋଗର ଅନୁସନ୍ଧାନ କରିବେ ।

ଓଡ଼ିଶାରେ ନିଯୁକ୍ତ ପ୍ରଥମ ଲୋକପାଳ ତାଙ୍କର ପାଞ୍ଚବର୍ଷର କାର୍ଯ୍ୟକାଳ ପୂରଣ କରିବା ଆଗରୁ ଇହଧାମ ତ୍ୟାଗ କଲେ । ଏହି ଶୂନ୍ୟସ୍ଥାନ ୧୯୮୯ ମସିହା ପର୍ଯ୍ୟନ୍ତ ପୂରଣ ହେଲା ନାହିଁ । ୧୯୮୯

ମସିହାରେ ଦ୍ୱିତୀୟ ଲୋକପାଳ ନିଯୁକ୍ତ ହେଲେ । ତାଙ୍କର ପାଞ୍ଚବର୍ଷର କାର୍ଯ୍ୟକାଳ ପୂରଣ ହେବା ଆଗରୁ ସରକାର ଏପରି ସଂସ୍ଥାର ଆବଶ୍ୟକତା ନଥିବାର ଅନୁଭବ କରି ଆଇନଟି ଉଚ୍ଛେଦ କଲେ ।

ଏହିପରି ସଂସ୍ଥା କାର୍ଯ୍ୟକ୍ଷମ ହେବା ପୂର୍ବରୁ ତା'ର ପରିସମାପ୍ତି ହେଲା ।

୧୯୯୫ ମସିହାରେ ସରକାର ଉତ୍ତମ ପ୍ରଶାସନ ପାଇଁ ଏପରି ସଂସ୍ଥାର ଉପଯୋଗିତା ଅନୁଭବ କରି ଓଡ଼ିଶା ଲୋକପାଳ ଓ ଲୋକାୟୁକ୍ତ ଆଇନ, ୧୯୯୫ ବିଧାନସଭାରେ ଗୃହୀତ କରାଇ ସେହିବର୍ଷ ରାଷ୍ଟ୍ରପତିଙ୍କ ଅନୁମୋଦନ ଆଣି, ଲୋକପାଳ ନିଯୁକ୍ତି କରିବା ପାଇଁ ପଦକ୍ଷେପ ନେଲେ ଓ ୧୯୯୬ ମସିହାରେ ତୃତୀୟ ଲୋକପାଳ ନିଯୁକ୍ତ ହେଲେ । ସେ ୧୯୯୭ ମସିହା ଫେବୃଆରୀ ୧୬ ତାରିଖରେ ଦାୟିତ୍ୱ ଗ୍ରହଣ କରି ପୂର୍ଣ୍ଣ ପାଞ୍ଚ ବର୍ଷ କାର୍ଯ୍ୟକାଳ ପୂରଣ କରି ପଦତ୍ୟାଗ କଲେ । ତା'ପରେ ୨୦୦୩ ଅଗଷ୍ଟ ଅଣତିରିଶ ତାରିଖରେ ପରବର୍ତ୍ତୀ ଲୋକପାଳ ଦାୟିତ୍ୱ ଗ୍ରହଣ କଲେ ।

ନ୍ୟାୟାଳୟରେ ଜନସେବକମାନଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ପାଇଁ ଅଭିଯୋଗ କଲେ, ତାହାର ପରିସମାପ୍ତି ଅତ୍ୟଧିକ ବିଳମ୍ବିତ ଖର୍ଚ୍ଚ ବହୁଳ ଓ ପଦ୍ଧତି କ୍ଳିଷ୍ଟ ହୋଇଥିବାରୁ ଜନସାଧାରଣଙ୍କର ଧୈର୍ଯ୍ୟଚ୍ୟୁତି ହୋଇଥାଏ ଓ ଅସନ୍ତୋଷ ଦୂର ହୋଇ ପାରେନା । କିନ୍ତୁ ଲୋକପାଳ ସଂସ୍ଥାରେ ଅଭିଯୋଗ କଲେ, ତାହା ଅଳ୍ପଖର୍ଚ୍ଚରେ, ସାମାନ୍ୟ ପଦ୍ଧତି ଅନୁସରଣ କରି ସ୍ୱଳ୍ପ ସମୟରେ ପରିସମାପ୍ତି ଘଟିଥାଏ ଓ ଉଚିତ କ୍ଷେତ୍ରରେ ଅଭିଯୋଗକାରୀମାନଙ୍କର ପ୍ରଶାସନ ପ୍ରତି ଅସନ୍ତୋଷ ଦୂର ହୋଇଥାଏ । ପ୍ରଶାସନ ଜନସାଧାରଣଙ୍କ ମଙ୍ଗଳ ପାଇଁ ଉଦ୍ଦିଷ୍ଟ ହୋଇଥିବାର ଅନୁଭୂତ ହୋଇଥିବାରୁ ଲୋକପାଳ ସଂସ୍ଥା ଜନସାଧାରଣଙ୍କର ଆଦୃତ ହେବା ଉଚିତ । କିନ୍ତୁ ଏହି ସଂସ୍ଥାପାଇଁ ଆବଶ୍ୟକ ଅର୍ଥ ଓ ଆନୁଷଙ୍ଗିକ ବ୍ୟବସ୍ଥା ସରକାର କରିପାରିଲେ, ଏହା ଅଧିକ ଆଦୃତ ହେବ ।

ବର୍ତ୍ତମାନ ଜନସାଧାରଣଙ୍କର ଧାରଣା ଯେ ପ୍ରଶାସନ ଦାୟିତ୍ୱରେ ଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଅଧିକାଂଶ ନିଜର ସ୍ୱାର୍ଥକୁ ଗୁରୁତ୍ୱ ଦେଇ ତାଙ୍କର କର୍ତ୍ତବ୍ୟ ସଂପାଦନ କରୁଛନ୍ତି ବା କାର୍ଯ୍ୟାନୁଷ୍ଠାନରେ ବିଳମ୍ବ କରୁଛନ୍ତି । ତେଣୁ ସମସ୍ତ ପ୍ରଶାସକଙ୍କୁ ଜନସାଧାରଣ ସନ୍ଦେହ ଦୃଷ୍ଟିରେ ରଖୁଛନ୍ତି ଓ ନିଜ ନିଜର ଅସନ୍ତୋଷ ଦୂର କରିବା ପାଇଁ, ପ୍ରଶାସକମାନଙ୍କ ନିକଟରେ ନିଜର ଆତ୍ମମର୍ଯ୍ୟାଦା ହାନି କରି ବାରମ୍ବାର ଅନୁରୋଧ କରୁଛନ୍ତି । ସେମାନଙ୍କର ବିଶ୍ୱାସ ହେଉଛି ଯେ ସମସ୍ତ ପ୍ରଶାସକ ଉତ୍କୋଚ ଗ୍ରହଣ ନକଲେ କାର୍ଯ୍ୟାନୁଷ୍ଠାନ କରୁ ନାହାନ୍ତି । ସେମାନେ ପକ୍ଷପାତିତା ଦୋଷରେ ଦୂଷିତ । କେତେକ ନିଜର ସ୍ୱଚ୍ଛତା ପ୍ରମାଣ କରିବା ପାଇଁ ପଦ୍ଧତି ଅନୁସରଣ କରି ବିଳମ୍ବିତ କାର୍ଯ୍ୟାନୁଷ୍ଠାନ କରୁଛନ୍ତି ବା ପଦ୍ଧତି ଅନୁସରଣରେ ବିଳମ୍ବ କରୁଛନ୍ତି । ସେମାନେ କାହା ନିକଟରେ ଉତ୍ତରଦାୟୀ ରହୁ ନାହାନ୍ତି । ଏହି ଚିନ୍ତାଧାରା ଘନୀଭୂତ ହେଲେ ଅସନ୍ତୋଷ ଘନୀଭୂତ ହୋଇ ପ୍ରଶାସନ ପ୍ରତି ବିଶ୍ୱାସ ରହିବ ନାହିଁ । ଏହା ଗଣତନ୍ତ୍ର ପକ୍ଷରେ ଘୋର କ୍ଷତିକାରକ ହେବ । ତେଣୁ ଯେଉଁ ଜନସେବକମାନେ ପ୍ରକୃତ ଜନମଙ୍ଗଳ ପାଇଁ ପାରିଶ୍ରମିକ ଗ୍ରହଣ କରି କର୍ତ୍ତବ୍ୟନିଷ୍ଠ, ସେମାନେ ଲୋକପାଳ ସଂସ୍ଥାଠାରେ ଉତ୍ତରଦାୟୀ ହୋଇ ସହଯୋଗ କଲେ, ଜନସାଧାରଣଙ୍କର ବିଶ୍ୱାସଭାଜନ ହୋଇ ପାରିବେ । ଲୋକପାଳ ସଂସ୍ଥା ସେମାନଙ୍କ କାର୍ଯ୍ୟ ନିର୍ବାହରେ ବାଧାସୃଷ୍ଟି କରୁଥିବାର ଚିନ୍ତାଧାରା ସେମାନଙ୍କୁ ତ୍ୟାଗ କରିବାକୁ ପଡ଼ିବ ।

ମୋର ସ୍ୱଳ୍ପ ଅନୁଭୂତିରେ, ପ୍ରଶାସକମାନେ, ଆଇନର ଶାସନରେ ଆଇନଠାରୁ ଦୂରତା ରକ୍ଷା କରି ନିଜର ଚିନ୍ତାଧାରାକୁ କାର୍ଯ୍ୟକାରୀ କରୁଛନ୍ତି । ଏହି କାରଣରୁ ଜନସାଧାରଣଙ୍କର ଧାରଣା ହେଉଛି ଯେ ସେମାନେ ପକ୍ଷପାତିତା ଦୋଷରେ ଦୂଷିତ । କେତେକ କ୍ଷେତ୍ରରେ ସେମାନେ ନିଜର ସାଧୁତାକୁ ତ୍ୟାଗ କରି ପ୍ରଭାବିତ ହୋଇ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁଛନ୍ତି । ଆଉ କେତେକ କ୍ଷେତ୍ରରେ ଦୁର୍ନୀତିପରାୟଣ ହେଉଛନ୍ତି ବା ଦୁର୍ନୀତି ଚିନ୍ତା କରି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁଛନ୍ତି । ଜନମଙ୍ଗଳ ରାଷ୍ଟ୍ରରେ ଏପରି କାର୍ଯ୍ୟାନୁଷ୍ଠାନ କ୍ଷତିକାରକ । ଏହା ଆଇନକୁ ନିଜ ହାତକୁ ନେଇ ବିଶୃଙ୍ଖଳିତ ସମାଜ ଗଠନରେ ଜନସାଧାରଣଙ୍କୁ ସାହାଯ୍ୟ କରେ । ଶୃଙ୍ଖଳାହୀନ ସମାଜର ସ୍ଥିତି ଓ ପ୍ରଗତି ଅନିଶ୍ଚିତ ହୋଇଥିବାରୁ ବ୍ୟକ୍ତିକୈନ୍ଦ୍ରିକ ଶାସନ ବ୍ୟବସ୍ଥା ଗଣତନ୍ତ୍ରକୁ ପ୍ରଭାବିତ କରେ ଓ ଗଣତନ୍ତ୍ରର ମର୍ଯ୍ୟାଦା ଜନସାଧାରଣ ଅନୁଭବ କରିପାରନ୍ତି ନାହିଁ । ତେଣୁ ଶୃଙ୍ଖଳିତ ସମାଜ ଗଠନ ଓ ଆଇନର ଶାସନ ବ୍ୟବସ୍ଥାକୁ ଦୃଢ଼ କରିବା ପାଇଁ ଲୋକପାଳ ସଂସ୍ଥାର ଆବଶ୍ୟକତା ଅଛି । ଏହି ସଂସ୍ଥା ଜନସେବକମାନଙ୍କ ପ୍ରତି ଜନସାଧାରଣଙ୍କର ବିଶ୍ୱାସ ଜନ୍ମାଇ ଗଣତନ୍ତ୍ରର ସ୍ଥିତି ଓ ପ୍ରଗତିରେ ଉନ୍ନତି କରାଇପାରିବ ।

ଶୃଙ୍ଖଳିତ ସମାଜ ଗଠନ ଓ ଆଇନର ଶାସନ ବ୍ୟବସ୍ଥାକୁ ଦୃଢ଼ କରିବା ପାଇଁ ଲୋକପାଳ ସଂସ୍ଥାର ଆବଶ୍ୟକତା ଅଛି । ଏହି ସଂସ୍ଥା ଜନସେବକମାନଙ୍କ ପ୍ରତି ଜନସାଧାରଣଙ୍କର ବିଶ୍ୱାସ ଜନ୍ମାଇ ଗଣତନ୍ତ୍ରର ସ୍ଥିତି ଓ ପ୍ରଗତିରେ ଉନ୍ନତି କରାଇପାରିବ ।

ବର୍ତ୍ତମାନ ଏହି ସଂସ୍ଥା ଜନସାଧାରଣଙ୍କଦ୍ୱାରା ଆଦୃତ ହେଲାଣି । ତୃତୀୟ ଲୋକପାଳଙ୍କ ସମୟରେ ବର୍ଷକୁ ଏକ ଶହରୁ ଦୁଇଶହ ଅସନ୍ତୋଷର ଅନୁସନ୍ଧାନ ହେଉଥିବା ବେଳେ ୨୦୦୩ ସେପ୍ଟେମ୍ବର ମାସରୁ ଚାରିଶହରୁ ଆରମ୍ଭ କରି ବାର୍ଷିକ ବାରଶହ ପାଖାପାଖି ଅଭିଯୋଗ ଦାଖଲ ହେଲାଣି । ସରକାର ଯଦି ଅଧିକ ସହଯୋଗର ହାତ ବଢ଼ାଇବେ, ଏହି ସଂସ୍ଥା ଅଧିକ ଆଦୃତ ହେବ ।

ଲୋକପାଳ ସଂସ୍ଥାରେ ଏପର୍ଯ୍ୟନ୍ତ ଲୋକାୟୁକ୍ତ ନିଯୁକ୍ତ ହୋଇନାହାନ୍ତି । ଯଦି ଅଭିଯୋଗର କ୍ରମବର୍ଦ୍ଧିଷ୍ଣୁ ସଂଖ୍ୟା ଏହିପରି ଭାବରେ ଅଗ୍ରଗତି କରିବ, ଜଣେ ଲୋକପାଳ ଅନୁସନ୍ଧାନ କରି ପରାମର୍ଶ ଦେବା କଷ୍ଟସାଧ ହୋଇପଡ଼ିବ ଓ ଲୋକାୟୁକ୍ତ ନିଯୁକ୍ତ ନହେଲେ ଅନ୍ୟାନ୍ୟ ବିଚାର ସଂସ୍ଥା ପରି ଏହି ସଂସ୍ଥାରେ ମଧ୍ୟ ନ୍ୟାୟ ପ୍ରଦାନ ବିଳମ୍ବିତ ହେବ । ଏହା ବର୍ତ୍ତମାନଠାରୁ ସରକାର ଚିନ୍ତା କରି ଉଚିତ୍ ପଦକ୍ଷେପ ନେଲେ ଜନସାଧାରଣ ଉପକୃତ ହେବେ ଓ ପ୍ରଶାସନପ୍ରତି ବିତୃଷ୍ଣାଭାବ ଦୂର ହେବ । ଜନସେବକମାନେ କର୍ମନିପୁଣ ହୋଇ ଆଇନ ଅନୁସାରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ ଲୋକାଦୃତ ହେବେ ଓ ଗଣତନ୍ତ୍ର ମଧ୍ୟ ସୁଦୃଢ଼ ହେବ ।

ଲୋକପାଳ ସଂସ୍ଥାରେ ଜନସେବକମାନଙ୍କର କାର୍ଯ୍ୟର ସମୀକ୍ଷା କରାଯାଏ । ସେଥିପାଇଁ ଅସନ୍ତୁଷ୍ଟ ବ୍ୟକ୍ତି ଅଭିଯୋଗ କରିବା ଆବଶ୍ୟକ । ଯେଉଁ କ୍ଷେତ୍ରରେ ଅଭିଯୋଗ ହୋଇ ପାରିଥାଆନ୍ତା, ଲୋକପାଳ ନିଜେ ଅଭିଯୋଗ ନପାଇ ମଧ୍ୟ ଅନୁସନ୍ଧାନ କରିପାରିବେ । କିନ୍ତୁ ଏହି କ୍ଷମତାର ବ୍ୟବହାର ସାଧାରଣଭାବେ ନହୋଇ ଅସାଧାରଣ ସମସ୍ୟା ଭିତରେ ହେବା ଉଚିତ୍ । ନଚେତ୍ ଲୋକପାଳ କ୍ଷମତାର ଦୁରୂପଯୋଗ କରିବାଦ୍ୱାରା ଜନସେବକ ମାନସିକ କଷ୍ଟ ପାଇ ନିଜର ଶକ୍ତି ଉଚିତ୍ କ୍ଷେତ୍ରରେ ବ୍ୟବହାର କରିବାରେ ଭୟଭୀତ ହୋଇ ଜନମଙ୍ଗଳବ୍ରତୀ ହୋଇପାରିବେ ନାହିଁ । ଏହା ଗଣତନ୍ତ୍ର ପାଇଁ ଶୁଭ ଲକ୍ଷଣ ନୁହେଁ ।

ବର୍ତ୍ତମାନ ଅଭିଯୋଗକାରୀ ପେନ୍‌ସନଧାରୀ ହୋଇଥିଲେ, ବିଳମ୍ବିତ କାର୍ଯ୍ୟାନୁଷ୍ଠାନ ଲୋକପାଳଙ୍କ ଅନୁସନ୍ଧାନ ସମୟରେ ତ୍ୱରାନ୍ୱିତ ହୋଇପାରୁଛି ଓ ସେମାନଙ୍କର କଷ୍ଟ ଲାଘବ ହେଉଛି । ଇନ୍ଦିରାଆବାସ ବଣ୍ଟନରେ ଆର୍ଥିକ ଅସ୍ୱଚ୍ଛଳ ବ୍ୟକ୍ତି ଅବହେଳିତ ହୋଇଥିଲେ, ସେମାନେ ଉପକାର ପାଇ ପାରୁଛନ୍ତି । କେତେକ ଅବାଞ୍ଛିତ ବ୍ୟକ୍ତି ଏହି ସୁବିଧା ପାଉଥିଲେ, ତାହା ଅନୁସନ୍ଧାନର ଜଣାପଡ଼ିଲେ, କାର୍ଯ୍ୟାନୁଷ୍ଠାନ ହେଉଛି । ବିଧବାମାନେ ଭତ୍ତା ପାଉଛନ୍ତି । ତଫସିଲଭୁକ୍ତ ଗୋଷ୍ଠୀ ବା ଜାତିର ଛାତ୍ରୀମାନେ ସରକାର ଦେଉଥିବା ଶିକ୍ଷା ଭତ୍ତା ପାଉଛନ୍ତି । ମନ୍ଦ ଉଦ୍ଦେଶ୍ୟ ରଖି ଯେଉଁ ଜନସେବକମାନେ ପାତର ଅନ୍ତର କରି କାର୍ଯ୍ୟାନୁଷ୍ଠାନ କରୁଥିଲେ ବା କାର୍ଯ୍ୟାନୁଷ୍ଠାନରେ ବିଳମ୍ବ କରି ବ୍ୟକ୍ତିଙ୍କୁ ଅସୁବିଧାରେ ପକାଉଥିଲେ ଓ ନ୍ୟାଯ୍ୟ ସରକାରୀ ପ୍ରାପ୍ୟରୁ ବଂଚିତ କରୁଥିଲେ, ଏହି ଲୋକପାଳ ସଂସ୍ଥା ମାଧ୍ୟମରେ ସେମାନେ ଉତ୍ତରଦାୟୀ ହେଉଛନ୍ତି । ଜନସେବକମାନଙ୍କର କର୍ତ୍ତବ୍ୟପାଳନରେ ଉତ୍ତର ଦାୟିତ୍ୱବୋଧ ଜନସାଧାରଣ ଅନୁଭବ କରିପାରୁଛନ୍ତି ।

ଏହିପରି ଭାବରେ ଲୋକପାଳ ସଂସ୍ଥା ଆମ ରାଜ୍ୟରେ ଜନମଙ୍ଗଳବ୍ରତୀ ହୋଇ ପ୍ରଶାସନକୁ ସୁଦୃଢ଼ କରିବାରେ ସାହାଯ୍ୟ କରୁଛି ।

ମାନ୍ୟବର ଲୋକପାଳ
ତୋଷାଳୀ ପ୍ଲାଜା, ସତ୍ୟନଗର
ଭୁବନେଶ୍ୱର

---

# ଗଣତନ୍ତ୍ର

ଡଃ ସୁଷମା ମିଶ୍ର

ବିସ୍ତାରିତ କରି ଦେଇ ନଭଶ୍ଚୁମ୍ବୀ ଇଚ୍ଛାର ସାମ୍ରାଜ୍ୟ ...
ରେ ଗଣତନ୍ତ୍ର ! ତୁ ଏବେ ସବୁଠାରୁ ସମ୍ବେଦନଶୀଳ
ତୁ ଲଙ୍ଘିବାବେଳେ ଅକସ୍ମାତ ଅନ୍ଧାରୀ ମୂଲକ
ମୁଁ ଜଳୁଛି ତୋ' ଭିତରେ ମିଞ୍ଜି ମିଞ୍ଜି ଦୀପଶିଖା ହୋଇ
ଆଲୋକିତ କରିବାକୁ ପ୍ରତିଟି ମୂଲକ ।
ତୁ କୋଳକୁ ଆସିଲା ଦିନୁ
ମୋ ସତ୍ତାରେ ଅଭିନ୍ନ ହୋଇ ଯାଇଛି
ତୋର ଅସ୍ତିତ୍ୱ ।
ଧନରେ ! ସେଇଥିପାଇଁତ ତୁ ପାହାଡ଼ର ଶୀର୍ଷରେ ଥିଲେ
ମୁଁ ଅପେକ୍ଷିଛି ପାଦ ଦେଶରେ ପାହାଡ଼ର ।

ସି-୧, ରାଜଭବନ କଲୋନୀ ଭୁବନେଶ୍ୱର-୮

# ଓଡ଼ିଶା ରାଜ୍ୟ ଦୁର୍ନୀତି ନିବାରଣ ସଂସ୍ଥାର ଅତୀତ ଓ ବର୍ତ୍ତମାନ

ଅନୁପ କୁମାର ପଟ୍ଟନାୟକ

**ସ**ରକାରୀ ବିଭାଗରେ ଦୁର୍ନୀତିର ବ୍ୟାପକତାକୁ ଉପଲବ୍ଧି କରି ରାଜ୍ୟରେ ଦୁର୍ନୀତି ନିବାରଣ କାର୍ଯ୍ୟକ୍ରମର ସୃଷ୍ଟି ୧୯୫୫ ମସିହାରୁ । ତଦାନିନ୍ତନ କ୍ୟାବିନେଟ ବିଭାଗ ଅଧୀନରେ ଏହା ପ୍ରାରମ୍ଭିକ ଅବସ୍ଥାରେ କାର୍ଯ୍ୟ କରୁଥିଲା । ପରେ ୧୯୫୭ ମସିହାରେ ଏହା 'ଦୁର୍ନୀତି ନିବାରଣ ବିଭାଗ' ଭାବେ ଏହା ଏକ ସ୍ୱତନ୍ତ୍ର ବିଭାଗରେ ପରିଗଣିତ ହୋଇ ସାଧାରଣ ପ୍ରଶାସନ ବିଭାଗ ଅଧୀନରେ କାର୍ଯ୍ୟ କରି ଆସୁଅଛି । ଏହି ବିଭାଗର ମୁଖ୍ୟ, ସାଧାରଣ ପ୍ରଶାସନ ବିଭାଗର ପଦପ୍ରଯୁକ୍ତ ସ୍ୱତନ୍ତ୍ର ସଚିବ ପଦରେ କାର୍ଯ୍ୟ କରନ୍ତି । ଏହି ବିଭାଗର କାର୍ଯ୍ୟ ପରିସର / କ୍ଷମତା ବୃଦ୍ଧି କରାଯାଇ ଜଣେ ଆଇ.ଜି., ୨ ଜଣ ଡି.ଆଇ.ଜି., ୮ ଜଣ ଏସ୍.ପି., ୪୪ ଜଣ ଡି.ଏସ୍.ପି., ୧୩୮ ଜଣ ଇନିସ୍‌ପେକ୍ଟର ପାହ୍ୟାର ଅଧିକାରୀଙ୍କ ସହିତ ଅନ୍ୟ ସହକାରୀ କର୍ମଚାରୀମାନଙ୍କ ପଦକୁ ସରକାରୀ ମଞ୍ଜୁରୀ ପ୍ରଦାନ କରାଯାଇଛି । ଏହି ସଂସ୍ଥାର ମୁଖ୍ୟ କାର୍ଯ୍ୟାଳୟ କଟକରେ ଥିବାବେଳେ ୬ ଜଣ ଏସ୍.ପି. ପାହ୍ୟାର ଅଧିକାରୀ ୬ଟି ଡିଭିଜନ ଦାୟିତ୍ୱରେ ଅଛନ୍ତି । ଏହାଛଡ଼ା ବିଭିନ୍ନ ଡିଭିଜନ ଅଧୀନରେ ୧୮ଟି ୟୁନିଟ୍ ଏବଂ ୪ଟି ସ୍କ୍ୱାର୍ଡ଼ ଅଫିସ ଯଥାକ୍ରମେ ଡି.ଏସ୍.ପି. ଏବଂ ଇନିସ୍‌ପେକ୍ଟରଙ୍କ ଦାୟିତ୍ୱରେ କାର୍ଯ୍ୟ କରୁଅଛି । ପ୍ରତ୍ୟେକ ରାଜସ୍ୱ ଜିଲ୍ଲାରେ ଭିଜିଲାନ୍‌ସ ବିଭାଗର ଉପସ୍ଥିତି ଉପଲବ୍ଧ କରିବା ପାଇଁ ସରକାର ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରୁଛନ୍ତି । ଆଇନାନୁଯାୟୀ ୬ଟି ଡିଭିଜନର ସଦର ମହକୁମାକୁ ଭିଜିଲାନ୍‌ସ ଥାନା ଭାବରେ ସରକାରୀ ବିଜ୍ଞପ୍ତି ମାଧ୍ୟମରେ ଘୋଷଣା କରାଯାଇଛି । ଦୁର୍ନୀତି ନିବାରଣ ଆଇନ ବ୍ୟତୀତ ଅତ୍ୟାବଶ୍ୟକୀୟ ସାମଗ୍ରୀ ଆଇନ, ଜଙ୍ଗଲ ଆଇନ ବିକ୍ରିକର ଆଇନ ଓ ଖିଲାପକାରୀ ସମେତ ୮ଟି ବିଭିନ୍ନ ଆଇନଦ୍ୱାରା କାର୍ଯ୍ୟାନୁଷ୍ଠାନ ଗ୍ରହଣ କରି ରାଜ୍ୟବାସୀଙ୍କ ସେବା ହିଁ ଏହି ସଂସ୍ଥା ଗଠନର ମୂଳ ଉଦ୍ଦେଶ୍ୟ ।

ପ୍ରଥମାବସ୍ଥାରେ ପ୍ରଚଳିତ ଆଇନରେ ଅପରାଧୀମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ପାଇଁ ଆଇନର ପରିସର ସେତେ ବ୍ୟାପକ ନଥିଲା । ୧୯୮୮ ମସିହାରେ ପ୍ରଣୀତ ଦୁର୍ନୀତି ନିବାରଣ ଆଇନ ଏକ ନୂତନ ରୂପରେଖ ନେଇ ସଂସଦଦ୍ୱାରା ସ୍ୱୀକୃତି ଲାଭ କଲା । ଲୋକସେବକ ସଂଜ୍ଞାକୁ ବ୍ୟାପକ କରାଯାଇ ଏହି ଆଇନର ପରିସରକୁ ଅଧିକ ବ୍ୟାପକ କରାଯିବାଦ୍ୱାରା ଉଚ୍ଚ ଅଧିକାରୀମାନଙ୍କ ବିରୁଦ୍ଧରେ ଏବଂ ଉଚ୍ଚପଦରେ ଅଧିଷ୍ଠିତ ରାଜନୈତିକ ବ୍ୟକ୍ତିବିଶେଷଙ୍କ ବିରୁଦ୍ଧରେ ଆୟ ବହିର୍ଭୂତ ସମ୍ପତ୍ତି ଠୁଳ ଅଭିଯୋଗରେ ମୋକଦ୍ଦମାମାନ ରଜୁ କରାଯାଇପାରିଲା ।

ଏହି ସଂସ୍ଥା ବର୍ତ୍ତମାନ ୮ ଜଣ ଏସ୍.ପି. ପାହ୍ୟାର ଅଧିକାରୀ, ୮୫ ଜଣ ଇନିସ୍‌ପେକ୍ଟର ଓ ୪୪ ଜଣ ଡି.ଏସ୍.ପି.ଙ୍କୁ ନେଇ ବର୍ଷରେ ହାରାହାରି ୨୫୦ରୁ ୩୦୦ ମଧ୍ୟରେ ମୋକଦ୍ଦମା ରଜୁ କରି ତଦନ୍ତ କରୁଅଛି । ବିଭିନ୍ନ ପଦପଦବୀରେ ସ୍ଥାନ ଖାଲି ଥିଲେ ମଧ୍ୟ ଗତ ଦଶନ୍ଧିରେ ୨୮୭୦ଟି ମୋକଦ୍ଦମା ରଜୁ କରାଯିବା ଏକ ଉଲ୍ଲେଖନୀୟ ସଫଳତା । ରାଜ୍ୟ ଦୁର୍ନୀତି ନିବାରଣ ବିଭାଗ ଭାରତର ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଅଧିକ ସଂଖ୍ୟକ ମୋକଦ୍ଦମା ରଜୁ କରିଥିବାରୁ ଶେଷରେ ଥିବା ସାରାଣୀ-୧ର ପରିସଂଖ୍ୟାନରୁ ପ୍ରତୀୟମାନ ହୁଏ ।

ଲୋକସେବକ ସଂଜ୍ଞାକୁ ବ୍ୟାପକ କରାଯାଇ ଏହି ଆଇନର ପରିସରକୁ ଅଧିକ ବ୍ୟାପକ କରାଯିବାଦ୍ୱାରା ଉଚ୍ଚ ଅଧିକାରୀମାନଙ୍କ ବିରୁଦ୍ଧରେ ଏବଂ ଉଚ୍ଚପଦରେ ଅଧିଷ୍ଠିତ ରାଜନୈତିକ ବ୍ୟକ୍ତିବିଶେଷଙ୍କ ବିରୁଦ୍ଧରେ ଆୟ ବହିର୍ଭୂତ ସମ୍ପତ୍ତି ଠୁଳ ଅଭିଯୋଗରେ ମୋକଦ୍ଦମାମାନ ରଜୁ କରାଯାଇପାରିଲା ।

ରଜୁ କରାଯାଉଥିବା ମୋକଦ୍ଦମାଗୁଡ଼ିକ ମଧ୍ୟରୁ ଅଧିକାଂଶ ମୋକଦ୍ଦମା ଫନ୍ଦି ବା ଟ୍ରାପ କେଶ ଉପରେ ପର୍ଯ୍ୟବସିତ । ପ୍ରାୟ ୩ ଦିନରେ ଜଣେ ଲେଖାଏଁ ସରକାରୀ କର୍ମଚାରୀ ବା ଲୋକସେବକ ଲାଞ୍ଚ ଗ୍ରହଣ କରିବା ସମୟରେ ଭିଜିଲାନ୍‌ସ ବିଭାଗ ହାତରେ ଧରାପଡ଼ିଥାନ୍ତି । ୧୯୯୦ ପୂର୍ବରୁ ବର୍ଷକୁ ୨୫ରୁ ୩୦ଟି ଏଭଳି ମୋକଦ୍ଦମା ହେଉଥିବାବେଳେ ଏହା ବର୍ତ୍ତମାନ ହାରାହାରି ୧୦୦ରୁ ୧୨୦କୁ ବୃଦ୍ଧି ପାଇଛି ।

ଦୁର୍ନୀତି ନିବାରଣ ବିଭାଗରେ ଫନ୍ଦି ମାମଲା ଓ ଆୟ ବହିର୍ଭୂତ ସମ୍ପତ୍ତି ଠୁଳ ମାମଲାଗୁଡ଼ିକ ଉପରେ ଅଧିକ ଗୁରୁତ୍ୱ ଦିଆଯାଇଥାଏ । ସାଧାରଣ ଲୋକଙ୍କ ବିଶ୍ୱାସଭାଜନ ହେବା ଏବଂ ତୃଣମୂଳ ସ୍ତରରୁ

ଦୁର୍ନୀତିକୁ ରୋକିବା ପାଇଁ ଫନ୍ଦି ମାମଲାର ଆବଶ୍ୟକତା ଅଧିକ । ଏତଦ୍‌ବ୍ୟତୀତ ଦୁର୍ନୀତି ନିବାରଣ ବିଭାଗ, ସରକାରୀ ଅର୍ଥ ତୋଷାରପାତ, ଅନୁଚିତ ଅନୁଗ୍ରହ ପ୍ରଦର୍ଶନ ଦ୍ୱାରା ସ୍ୱପଦବୀର ଅପପ୍ରୟୋଗ ଅଭିଯୋଗ ଉପରେ ମଧ୍ୟ ମୋକଦ୍ଦମା ରୁଜୁ କରିଥାଏ ।

ଏହି ବିଭାଗ ଗତ ୧୦ ବର୍ଷ ମଧ୍ୟରେ ୭୪୬ ଜଣ ପ୍ରଥମ ଶ୍ରେଣୀ ଅଧିକାରୀ, ୭୯୪ ଜଣ ଦ୍ୱିତୀୟ ଶ୍ରେଣୀ ଅଧିକାରୀ, ୨୩୭୦ ଜଣ ତୃତୀୟ ଶ୍ରେଣୀ କର୍ମଚାରୀ, ୬୩ ଜଣ ଚତୁର୍ଥ ଶ୍ରେଣୀ କର୍ମଚାରୀ ଓ ୧୬୦୫ ଜଣ ଅନ୍ୟାନ୍ୟ ଲୋକସେବକଙ୍କ ବିରୁଦ୍ଧରେ ୨୮୭୦ ଗୋଟି ମୋକଦ୍ଦମା ରୁଜୁ କରିଥିବାବେଳେ ସେହି ସମୟ ମଧ୍ୟରେ ୨୧୬୮ ଗୋଟି ମୋକଦ୍ଦମାରେ ତଦନ୍ତ ସମାପ୍ତି କରି ଅଭିଯୋଗ ଫର୍ଦ୍ଦ ଦାଖଲ କରିପାରିଛି । ଏହା ଉଲ୍ଲେଖନୀୟ ଯେ ଆଲୋଚିତ ଅବଧି ମଧ୍ୟରେ ରାଜ୍ୟ ଦୁର୍ନୀତି ନିବାରଣ ବିଭାଗ ୫୪ ଜଣ ଆଇ.ଏ.ଏସ୍., ଆଇ.ପି.ଏସ୍. ଓ ଆଇ.ଏଫ୍.ଏସ୍. ଅଫିସରଙ୍କ ବିରୁଦ୍ଧରେ ୧୧୮ ଗୋଟି ମୋକଦ୍ଦମା ରୁଜୁ କରି, ଏହି ମୋକଦ୍ଦମାଗୁଡ଼ିକ ମଧ୍ୟରୁ ୩୧ଟିରେ ଅଭିଯୋଗ ଫର୍ଦ୍ଦ (ଚାର୍ଜ ସିଟ୍) ଦାଖଲ କରିଅଛି ଏବଂ ୪୮ଟିରେ ମୋକଦ୍ଦମାରେ ତଦନ୍ତ ଚାଲୁ ରହିଛି । ଅନ୍ୟ ୩୯ଟି ମୋକଦ୍ଦମା ଅନ୍ୟାନ୍ୟ କାରଣରୁ ଫଏସଲା କରାଯାଇଛି । ସେହିପରି ୨୯ ଜଣ ରାଜନୈତିକ ନେତାଙ୍କ ନାମରେ ୩୬ ଗୋଟି ମୋକଦ୍ଦମା ରୁଜୁ କରାଯାଇ ତଦନ୍ତ ଶେଷରେ ୨୬ଟି ରାଜନୈତିକ ଅଭିଯୋଗ ଫର୍ଦ୍ଦ ଦାଖଲ କରାଯାଇଅଛି । ଏହି ରାଜନୈତିକ ବ୍ୟକ୍ତିମାନଙ୍କ ମଧ୍ୟରୁ ଅଦାଲତ ଦ୍ୱାରା ୨ ଜଣ ଦୋଷୀ ସାବ୍ୟସ୍ତ ହୋଇଥିବାବେଳେ ସେମାନଙ୍କ ମଧ୍ୟରୁ ଜଣେ ରାଜନୈତିକ ବ୍ୟକ୍ତି ମାନ୍ୟବର ସର୍ବୋଚ୍ଚ ନ୍ୟାୟାଳୟ ଦ୍ୱାରା ଖଲାସ ହୋଇଛନ୍ତି । ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହିସାବରେ ଭିଜିଲାନ୍ସ ବିଭାଗଦ୍ୱାରା ଓଡ଼ିଶା ଗ୍ରାମ୍ୟ ଗୃହ ଉନ୍ନୟନ ନିଗମ ଲିମିଟେଡ଼ରେ ହୋଇଥିବା କୋଟି କୋଟି ଟଙ୍କାର ଦୁର୍ନୀତିରେ ସଂପୃକ୍ତ ବ୍ୟକ୍ତିବିଶେଷଙ୍କ ନାମରେ ୩୩ ଗୋଟି ମୋକଦ୍ଦମା ରୁଜୁ କରାଯାଇ ତଦନ୍ତ କରାଯାଉଛି । ଏଥିରେ ଜଡ଼ିତ ଥିବା ମୁଖ୍ୟ ଅଭିଯୁକ୍ତମାନଙ୍କୁ ମଧ୍ୟ ଗିରଫ କରାଯାଇ ଅଦାଲତକୁ ଚାଲାଣ କରାଯାଇଛି ।

ଏତଦ୍‌ବ୍ୟତୀତ ଭିଜିଲାନ୍ସ ବିଭାଗ ବିଗତ ୧୦ ବର୍ଷ ମଧ୍ୟରେ ବିଭିନ୍ନ ଅଭିଯୋଗକୁ ଭିତ୍ତିକରି ୩୬୮୭ ଗୋଟି ଅନୁସନ୍ଧାନ ହାତକୁ ନେଇଥିଲା । ସେଥିମଧ୍ୟରୁ ଅନୁସନ୍ଧାନର ପରିସମାପ୍ତି ପରେ ୧୧୯୮ଟିରେ ଫୌଜଦାରୀ ମାମଲା ରୁଜୁ କରାଯାଇଥିବାବେଳେ ୯୯୫ଟି ଅନୁସନ୍ଧାନରେ ବିଭାଗୀୟ ଆଦେଶନାମା ଓ ସରକାରୀ ନିୟମାବଳୀ ଉଲ୍ଲଙ୍ଘନର ଅଭିଯୋଗ ପ୍ରମାଣିତ ହେବାରୁ ବିଭାଗୀୟ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ସଂପୃକ୍ତ କର୍ମଚାରୀଙ୍କ ବିରୁଦ୍ଧରେ ଗ୍ରହଣ କରିବା ଲାଗି ସୁପାରିଶ କରାଯାଇଛି ।

ଦୁର୍ନୀତି ନିବାରଣ ବିଭାଗର ପରିସୀମା କୌଣସି ନିର୍ଦ୍ଦିଷ୍ଟ ବିଭାଗ ମଧ୍ୟରେ ସୀମିତ ନୁହେଁ । ସରକାରଙ୍କ ଅଧୀନରେ କାମ କରୁଥିବା ବିଭିନ୍ନ ବିଭାଗ, ନିଗମ ଓ ଅନ୍ୟାନ୍ୟ ପ୍ରତିଷ୍ଠାନରେ ହେଉଥିବା ଦୁର୍ନୀତି ପର୍ଯ୍ୟବସିତ ଅଭିଯୋଗ ଉପରେ ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଥାଏ । ଯେଉଁ ବିଭାଗରେ ଦୁର୍ନୀତି କରିବାର ସୁଯୋଗ ଯେତେ ବେଶୀ, ସେହି ବିଭାଗରେ କର୍ମଚାରୀଙ୍କ ବିରୁଦ୍ଧରେ ସେତେ ଅଧିକ କାର୍ଯ୍ୟାନୁଷ୍ଠାନ ହେବା ମଧ୍ୟ ସ୍ୱାଭାବିକ । ବିଗତ ୫ ବର୍ଷ ମଧ୍ୟରେ କେତେକ ବିଭାଗର କର୍ମଚାରୀଙ୍କ ବିରୁଦ୍ଧରେ ରୁଜୁ କରାଯାଇଥିବା ମୋକଦ୍ଦମାର ଏକ ନମୂନା ସାରଣୀ-୨ (ଶେଷ)ରେ ପ୍ରଦତ୍ତ କରାଗଲା ।

ଅଦାଲତରେ ଆଇନଗତ କାର୍ଯ୍ୟାନୁଷ୍ଠାନ ଲାଗି ଅଭିଯୋଗଫର୍ଦ୍ଦ ଦାଖଲ କରାଯିବା ବ୍ୟତୀତ, ବିଭିନ୍ନ ପଦପଦବୀରେ ଥିବା କର୍ମଚାରୀମାନେ ସରକାରୀ ଆଚରଣ ବିଧି ଉଲଙ୍ଘନ କରିବା ଅଭିଯୋଗରେ ସେମାନଙ୍କ ବିରୁଦ୍ଧରେ ବିଭାଗୀୟ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ପାଇଁ ଦୁର୍ନୀତି ନିବାରଣ ବିଭାଗ ସୁପାରିଶ କରିଥାଏ । ଏହି ପରିପ୍ରେକ୍ଷୀରେ ବର୍ତ୍ତମାନ ସୁଦ୍ଧା ବିଭିନ୍ନ ବିଭାଗରେ ୨୨୯୩ଟି ଘଟଣାରେ, ଦୁର୍ନୀତି ନିବାରଣ ବିଭାଗର ସୁପାରିଶକ୍ରମେ ବିଭାଗୀୟ କାର୍ଯ୍ୟାନୁଷ୍ଠାନ ବିଚାରାଧୀନ ଅଛି ।

ରାଜ୍ୟ ଦୁର୍ନୀତି ନିବାରଣର ମୋକଦ୍ଦମାଗୁଡ଼ିକର ବିଚାର ନିମନ୍ତେ ବର୍ତ୍ତମାନ ରାଜ୍ୟରେ ୯ ଗୋଟି ସ୍ୱତନ୍ତ୍ର ବିଚାରପତି, ବିଚାରାଳୟ ଯଥା- ଗୋଟିଏ କରି କଟକ, ବାଲେଶ୍ୱର, ବ୍ରହ୍ମପୁର, ସମ୍ବଲପୁର, ବଲାଙ୍ଗିର, ଜୟପୁରଠାରେ ଏବଂ ୩ଟି ଅଦାଲତ ଭୁବନେଶ୍ୱରଠାରେ କାର୍ଯ୍ୟକ୍ଷମ ଅଛି । ସମ୍ପ୍ରତି ବିଭିନ୍ନ ବିଚାରାଳୟରେ ଦୁର୍ନୀତି ନିବାରଣ ବିଭାଗଦ୍ୱାରା ଅଭିଯୋଗ ଫର୍ଦ୍ଦ ଦାଖଲ କରାଯାଇଥିବା ୨୨୪୩ ଗୋଟି ମୋକଦ୍ଦମା ବିଚାରାଧୀନ ଅଛି । ଏହି ମୋକଦ୍ଦମାଗୁଡ଼ିକର ତ୍ୱରାନ୍ୱିତ ଫଏସଲା ପାଇଁ ରାଜ୍ୟ ସରକାର ଆଉ ୩ଟି ବିଚାରାଳୟ ପ୍ରତିଷ୍ଠା କରିବା ଲାଗି ସହୃଦୟତାର ସହିତ ବିଚାର କରୁଛନ୍ତି । ଚଳିତ ବର୍ଷ ୧୧୩ଟି ମୋକଦ୍ଦମା ଅଦାଲତରେ ଫଏସଲା କରାଯାଇ ୩୭ଟି ମୋକଦ୍ଦମାରେ ୪୪ ଜଣ ସରକାରୀ କର୍ମଚାରୀ ଏବଂ ୨ ଜଣ ସାଧାରଣ ବ୍ୟକ୍ତିଙ୍କୁ ଦଣ୍ଡିତ କରାଯାଇଛି, ଯାହା ଅଦାଲତରେ ଫଏସଲା ହୋଇଥିବା ମୋକଦ୍ଦମାର ଶତକଡ଼ା ୩୯ ଭାଗ ଅଟେ । ବିଚାରାଳୟରେ ଦଣ୍ଡିତ ହୋଇଥିବା ଯୋଗୁଁ ଚଳିତ ବର୍ଷ ୧୦ ଜଣଙ୍କୁ କାର୍ଯ୍ୟରୁ ବହିଷ୍କାର କରାଯାଇଛି ଏବଂ ଅନ୍ୟମାନଙ୍କୁ ବହିଷ୍କାର କରିବା ଲାଗି ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉଛି । ଆୟ ବହିର୍ଭୂତ ସମ୍ପତ୍ତି ଠୁଳ କରିଥିବା ମାମଲାରେ ବିଚାରାଳୟରେ ଫଏସଲା କରାଯାଇ ୨ ଜଣ ସରକାରୀ କର୍ମଚାରୀଙ୍କୁ ଦଣ୍ଡିତ କରାଯାଇଛି । ପୋଲିସ୍ ବିଭାଗର ୨ ଜଣ ଅଧିକାରୀ, ଜଣେ ଆଇ.ପି.ଏସ୍. ଅଧିକାରୀଙ୍କୁ ପ୍ରଭାବିତ କରିବା ପାଇଁ ଲାଞ୍ଚ ଦେବା ଘଟଣାରେ ଧରାପଡ଼ି, ଅଦାଲତଦ୍ୱାରା ଦଣ୍ଡିତ ହୋଇ ଚାକିରିରୁ ବହିଷ୍କୃତ ହୋଇଛନ୍ତି ।

ଉଚ୍ଚ ପଦପଦବୀରେ ଅଧିଷ୍ଠିତ ଥିବା ରାଜନୈତିକ ବ୍ୟକ୍ତିବିଶେଷ ସରକାରୀ ଅଧିକାରୀଙ୍କ ବିରୁଦ୍ଧରେ ରଜୁ କରାଯାଉଥିବା ମୋକଦ୍ଦମାଗୁଡ଼ିକ ବିଚାର କରିବା ନିମନ୍ତେ ଏକ ସ୍ୱତନ୍ତ୍ର ବିଚାରାଳୟ ସ୍ଥାପିତ ହୋଇଥିଲା । କିନ୍ତୁ ପରବର୍ତ୍ତୀ ସମୟରେ ୧୯୯୫ ମସିହାରେ ଏହି ଆଇନକୁ ତଦାନୀନ୍ତନ ସରକାର ରଦ୍ଦ କରି ଦେବା ଫଳରେ ସ୍ୱତନ୍ତ୍ର ବିଚାରାଳୟ ଆଇନର ପରିସମାପ୍ତି ଘଟିଥିଲା ।

ମାତ୍ର ଅଧୁନା ରାଜ୍ୟ ସରକାର ୨ଟି ସ୍ୱତନ୍ତ୍ର ବିଚାରାଳୟ କଟକ ଓ ଭୁବନେଶ୍ୱରଠାରେ ଗୋଟିଏ କରି ସ୍ଥାପନ କରିବା ନିମନ୍ତେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଛନ୍ତି । ଏହି ସମ୍ପର୍କିତ ଆଇନଟି ମଧ ଇତିମଧ୍ୟରେ ମହାମାନ୍ୟ ରାଷ୍ଟ୍ରପତିଙ୍କ ଅନୁମୋଦନ ଲାଭ କରିସାରିଛି । ଏହା ଫଳରେ ଉଚ୍ଚ ପଦାଧିକାରୀ ଓ ରାଜନୈତିକ ପଦାଧିକାରୀମାନଙ୍କ ବିରୁଦ୍ଧରେ ଆୟ ବହିର୍ଭୂତ ସମ୍ପତ୍ତି ଠୁଳ ମାମଲାରେ ଦାଖଲ ହୋଇଥିବା ଅଭିଯୋଗ ଫର୍ଦଗୁଡ଼ିକର ବିଚାର ଏହି ଅଦାଲତଗୁଡ଼ିକର ପରିସରଭୁକ୍ତ ହୋଇପାରିବ ।

ବହୁଳ ଅର୍ଥ ଖର୍ଚ୍ଚ ହେଉଥିବା ବିଭିନ୍ନ ବିଭାଗଗୁଡ଼ିକରେ ଆଭ୍ୟନ୍ତରୀଣ ଦୁର୍ନୀତିକୁ ରୋକିବା ପାଇଁ ଅନ୍ତର୍ବିଭାଗୀୟ ଦୁର୍ନୀତି ନିବାରଣ ପ୍ରକ୍ରିୟା (ଇଣ୍ଟରନାଲ ଭିଜିଲାନ୍ସ ମେକାନିଜିମ୍) ଉପରେ ଗୁରୁତ୍ୱ ଦିଆଯାଉଛି । ଏହି ପରିପ୍ରେକ୍ଷୀରେ ବିଭିନ୍ନ ସରକାରୀ ବିଭାଗ ଏବଂ ସରକାରାଧୀନ ନିଗମମାନଙ୍କରେ ଚିଫ୍ ଭିଜିଲାନ୍ସ ଅଫିସର ପଦବୀ ସୃଷ୍ଟି କରାଯାଇ ସେମାନଙ୍କୁ ସେହି ବିଭାଗଗୁଡ଼ିକରେ ଖର୍ଚ୍ଚ କରାଯାଉଥିବା ଅର୍ଥର ଯେପରି ସୁବିନିଯୋଗ ହୁଏ ସେଥିପ୍ରତି ଦୃଷ୍ଟି ଦେବାକୁ ସରକାରଙ୍କ ପକ୍ଷରୁ ନିର୍ଦ୍ଦେଶ ଦିଆଯାଇଛି ।

ଦୁର୍ନୀତି ନିବାରଣ ବିଭାଗ ଦୁର୍ନୀତି ସମ୍ବନ୍ଧୀୟ ମୋକଦ୍ଦମା ବ୍ୟତୀତ ବିକ୍ରିକର ଫାଙ୍କୁଥିବା ବ୍ୟବସାୟୀ ଏବଂ ବ୍ୟବସାୟିକ ଅନୁଷ୍ଠାନମାନଙ୍କ ବିରୁଦ୍ଧରେ ମଧ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥାଏ । ଗତ ୫ ବର୍ଷ ମଧ୍ୟରେ ବିକ୍ରିକର ଫାଙ୍କିବା ଅଭିଯୋଗ ପରେ ଟ.୩୦,୮୧,୭୭,୯୩୬ଙ୍କା ଜୋରିମାନା ବାବଦକୁ ନଗଦ ଆକାରରେ ଆଦାୟ କରାଯାଇଛି । ଏତଦ୍‌ବ୍ୟତୀତ ଉକ୍ତ ସମୟ ମଧ୍ୟରେ ୩୦୩୯ଟି ବିକ୍ରିକର ଫାଙ୍କି ଘଟଣା ବିଭାଗୀୟ (ବାଣିଜ୍ୟକର) କର୍ତ୍ତୃପକ୍ଷଙ୍କ ଦୃଷ୍ଟିକୁ ଅଣାଯାଇଛି । ଯାହାଫଳରେ କି ଏହି ମୋକଦ୍ଦମାର ବିଚାର ଉପରେ ସରକାରଙ୍କୁ ଶତାଧିକ କୋଟି ଟଙ୍କା ମିଳିବାର ସମ୍ଭାବନା ରହିଛି । ରାଜ୍ୟର ବିଭିନ୍ନ ତନଖି ଫାଟକ ଏବଂ ରାସ୍ତାରେ ଯାଉଥିବା ଯାନବାହନ ଉପରେ ଅଚାନକ ଚଢ଼ାଉ କରାଯାଇ କାର୍ଯ୍ୟାନୁଷ୍ଠାନମାନ ଗ୍ରହଣ କରାଯାଉଛି । ଏହାଫଳରେ ତନଖି ଫାଟକମାନଙ୍କରେ ହେଉଥିବା ଅର୍ଥ ତୋଷରପାତକୁ ଉଲ୍ଲେଖନୀୟ ଭାବେ ପ୍ରତିହତ କରାଯାଇପାରିଛି ।

ଉପଯୁକ୍ତ ମାନବସମ୍ବଳ ଏବଂ ପୃଷ୍ଠଭୂମିର ଅଭାବସତ୍ତ୍ୱେ ଓଡ଼ିଶା ରାଜ୍ୟ ଦୁର୍ନୀତି ନିବାରଣ ବିଭାଗ ସର୍ବଭାରତୀୟ ସ୍ତରରେ ଏକ ଅଗ୍ରଣୀ ସଂସ୍ଥା ଭାବରେ ସୁପ୍ରତିଷ୍ଠିତ । ଏହି ବିଭାଗ ପ୍ରତି ଜନସାଧାରଣଙ୍କର ଆସ୍ଥା ଏବଂ ବିଶ୍ୱାସ ଅତୁଟ ରହିଥିବାର ପ୍ରମାଣ ପଂଜୀକୃତ ଫନ୍ଦୀ ମାମଲାର ସଂଖ୍ୟାରୁ ସ୍ପଷ୍ଟ ଅନୁମେୟ ।

ଦୁର୍ନୀତି ଏକ ସାମାଜିକ କଳଙ୍କ । ସମାଜରୁ ଦୁର୍ନୀତି ନିରାକରଣ ନହେଲେ ସାଧାରଣ ଲୋକଙ୍କ ପାଖରେ ସରକାରୀ ପ୍ରକଳ୍ପଗୁଡ଼ିକର ଉପକାରିତା ଠିକ୍ ଭାବେ ପହଞ୍ଚିବା କଷ୍ଟକର ହୋଇପଡ଼େ । ଦୁର୍ନୀତି ନିରାକରଣ କେବଳ ଦୁର୍ନୀତି ନିବାରଣ ବିଭାଗର କେଇ ଜଣ କର୍ମଚାରୀଙ୍କଦ୍ୱାରା ସମ୍ଭବ ନୁହେଁ । ସମାଜର ପ୍ରତ୍ୟେକ ସଚେତନ ନାଗରିକ ଏଥିରେ ସହଯୋଗ କଲେ ଏହାର ସୁଫଳ ସାଧାରଣରେ ଉପଲବ୍ଧି ହୋଇପାରିବ । ଦୁର୍ନୀତିର ଉପଯୁକ୍ତ ମୁକାବିଲା କରିବା ପାଇଁ ସମାଜର ସମସ୍ତ ବ୍ୟକ୍ତି ଉଦ୍ୟମ କରିବା ବାଞ୍ଛନୀୟ । ଦୁର୍ନୀତିଖୋର କର୍ମଚାରୀ ବା ବ୍ୟକ୍ତିଙ୍କୁ ସର୍ବସାଧାରଣରେ ବାସନ୍ଦ କରିବା ଉଚିତ୍ । ସାଧାରଣ ଜୀବନରେ ଅସତ୍ ଉପାୟରେ ଅର୍ଥ ଉପାର୍ଜନ କରି କିଛି ଲୋକ କ୍ରମଶଃ ପ୍ରଭାବ ବିସ୍ତାର କରିବାରେ ଲାଗି ପଡ଼ିଛନ୍ତି । ସେମାନଙ୍କର ମୁଖା ଖୋଲିବା କେବଳ ଦୁର୍ନୀତି ନିବାରଣ ବିଭାଗ ନୁହେଁ ସମସ୍ତଙ୍କର ଦାୟିତ୍ୱ । ବର୍ତ୍ତମାନ ସମାଜରେ ଦୁର୍ନୀତି ଉପାୟରେ ଅର୍ଥ ରୋଜଗାର କରି ଆଭିଜାତ୍ୟପୂର୍ଣ୍ଣ ଢଙ୍ଗରେ ଜୀବନ ଅତିବାହିତ କରିବାକୁ ଅଧିକାଂଶ ଶ୍ରେୟ ମଣୁଛନ୍ତି । ସମାଜର ତଥାକଥିତ ପ୍ରତିଷ୍ଠିତ ବ୍ୟକ୍ତିମାନେ ଦୁର୍ନୀତି ପରାୟଣ ହେବା ଯୋଗୁଁ ଭାରତର ଗୌରବ ବିଶ୍ୱଦରବାରରେ ମଧ କଳଙ୍କିତ ହେଉଅଛି । ଦୁର୍ନୀତି କେବଳ ଜନସ୍ୱାର୍ଥ ବିରୋଧୀ ନୁହେଁ, ଏହା ଏକ ରାଷ୍ଟ୍ର ବିରୋଧୀ ଅପରାଧ । କେବଳ କିଛି ଲୋକଙ୍କୁ ଦୁର୍ନୀତି ଅଭିଯୋଗରେ ଦଣ୍ଡିତ କରି ଜେଲର ଚାରିକାନ୍ଥ ଭିତରେ ବନ୍ଦ କରିଦେଲେ ସମାଜ ଯେ ଦୁର୍ନୀତି ମୁକ୍ତ ହୋଇଯିବ, ଏହା ଭାବିବା ଠିକ୍ ନୁହେଁ । ଦୁର୍ନୀତିଠାରୁ ଦୂରରେ ରହିବାପାଇଁ ଦରକାର ଏକ ଦୃଢ଼ ନୈତିକ ମାନସିକତା, ଏହା ସମ୍ଭବ ହେବ ଯେତେବେଳେ ଜନଜାଗରଣ ଏଥିପାଇଁ ସୃଷ୍ଟି ହେବ । ତେଣୁ ଶିକ୍ଷାର ପ୍ରସାର, ପ୍ରଶାସନିକ ସଂସ୍କାର, ସରକାରୀ କାର୍ଯ୍ୟରେ ଅଧିକ ସ୍ୱଚ୍ଛତା, ଉପଯୁକ୍ତ ପ୍ରତିନିଧି ଚୟନ, କ୍ଷମତାର ବିକେନ୍ଦ୍ରୀକରଣ, ସରକାରୀ ନିୟମ କାନୁନରେ ସରଳୀକରଣ ତଥା ଜନସାଧାରଣଙ୍କର ଅଭିଯୋଗ ଗ୍ରହଣ କରିବାର ଆବଶ୍ୟକତା ନିତାନ୍ତ ଜରୁରୀ । ଏହାସହିତ ଦୁର୍ନୀତିଗ୍ରସ୍ତ ବ୍ୟକ୍ତିଙ୍କର କଳାଧନର ବାଜ୍ୟାପ୍ତି ପାଇଁ ଆଇନ ପ୍ରଣୟନ କରାଯିବା ମଧ ଆବଶ୍ୟକ ।

ଗଣତନ୍ତ୍ର ଓ ଦୁର୍ନୀତି ଏକ ସଙ୍ଗେ ସମ୍ଭବ ନୁହେଁ । ଦୁର୍ନୀତି ଗଣତନ୍ତ୍ରର ପରିପନ୍ଥୀ । ଏହା ଜନସାଧାରଣଙ୍କୁ ପ୍ରଶାସନଠାରୁ ଦୂରେଇ ଦେଇଥାଏ । ରାଷ୍ଟ୍ରୀୟ ମୁଖ୍ୟସ୍ରୋତରେ ଜନସାଧାରଣଙ୍କୁ ସାମିଲ କରିବାକୁ ହେଲେ ଏକ ଲୋକାଭିମୁଖୀ ପ୍ରଶାସନର ଆବଶ୍ୟକତା ଅଛି । ରାଜ୍ୟ ଦୁର୍ନୀତି ନିବାରଣ ବିଭାଗକୁ ଅଧିକ କାର୍ଯ୍ୟଦକ୍ଷ କରି ଦୁର୍ନୀତି ବିରୁଦ୍ଧରେ ସଂଗ୍ରାମ କରିବା ଲାଗି ରାଜନୈତିକ ଇଚ୍ଛା ଶକ୍ତି, ଜନସାଧାରଣଙ୍କର ଅକୁଣ୍ଠ ସମର୍ଥନ ଓ ଉକ୍ତ ସଂସ୍ଥାର ଅଧିକାରୀମାନଙ୍କର ନିଷ୍ଠା ହେଉଛି ମୁଖ୍ୟ ଆୟୁଧ ।

### ସାରଣୀ-୧

| କ୍ର.ନଂ. | ରାଜ୍ୟ | ୧୯୯୮ | ୧୯୯୯ | ୨୦୦୦ | ୨୦୦୧ | ୨୦୦୨ | ୨୦୦୩ | ୨୦୦୪ | ୨୦୦୫ | ୨୦୦୬ | ୨୦୦୭ |
|---|---|---|---|---|---|---|---|---|---|---|---|
| ୧. | ଆନ୍ଧ୍ରପ୍ରଦେଶ | ୨୩୨ | ୨୧୮ | ୨୧୧ | ୨୨୬ | ୩୪୫ | ୩୨୮ | ୧୯୫ | ୨୫୧ | | |
| ୨. | ଅରୁଣାଚଳ ପ୍ରଦେଶ | ୦ | ୦ | ୦ | ୦ | ୦ | ୩ | ୦ | ୦ | | |
| ୩. | ଆସାମ | ୬ | ୩ | ୯ | ୧୭ | ୧୧ | ୨୬ | ୧୭ | ୯ | | |
| ୪. | ବିହାର | ୨୪ | ୩୯ | ୩୨ | ୧୭ | ୧୨ | ୨୨ | ୩୧ | ୨୧ | | |
| ୫. | ଛତିଶଗଡ଼ | -- | -- | -- | -- | ୫୫ | ୧୫ | ୧୬ | ୩୭ | | |
| ୬. | ଗୋଆ | ୬ | ୩ | ୧ | ୧୦ | ୧୦ | ୫ | ୧ | ୨ | | |
| ୭. | ଗୁଜରାଟ | ୨୦୪ | ୨୧୮ | ୧୭୫ | ୧୯୯ | ୧୭୮ | ୧୯୦ | ୧୯୫ | ୨୦୫ | | |
| ୮. | ହରିଆନା | ୭୫ | ୬୫ | ୮୭ | ୧୧୦ | ୨୬୮ | ୧୫୨ | ୧୦୮ | ୨୫୧ | | |
| ୯. | ହିମାଚଳପ୍ରଦେଶ | ୨୮ | ୪୬ | ୪୧ | ୪୫ | ୩୩ | ୫୫ | ୨୦ | ୪୮ | | |
| ୧୦. | ଜାମ୍ମୁ କାଶ୍ମୀର | ୨୫୯ | ୧୭୪ | ୭୯ | ୪୮ | ୫୬ | ୭୩ | ୨୭ | ୬୫ | | |
| ୧୧. | ଝାଡ଼ଖଣ୍ଡ | -- | -- | -- | -- | ୭୮ | ୩୬ | ୨୬ | -- | | |
| ୧୨. | କର୍ଣ୍ଣାଟକ | ୨୧୨ | ୨୧୧ | ୨୧୪ | ୧୯୫ | ୧୫୧ | ୯୩ | ୭୭ | ୩୧୩ | | |
| ୧୩. | କେରଳ | ୧୪୭ | ୧୬୧ | ୨୦୨ | ୧୨୯ | ୧୪୫ | ୨୧୦ | ୧୪୬ | ୧୪୩ | | |
| ୧୪. | ମଧ୍ୟପ୍ରଦେଶ | ୧୬୦ | ୧୪୪ | ୨୦୭ | ୨୩୧ | ୨୭୧ | ୨୧୦ | ୧୧୧ | -- | | |
| ୧୫. | ମହାରାଷ୍ଟ୍ର | ୪୫୬ | ୪୪୫ | ୪୫୬ | ୪୯୭ | ୪୭୮ | ୫୨୧ | ୪୪୬ | ୪୩୭ | | |
| ୧୬. | ମଣିପୁର | ୫ | ୫ | ୩ | ୧ | ୮ | ୧ | ୧ | ୩ | | |
| ୧୭. | ମେଘାଳୟ | ୦ | ୦ | ୦ | ୧ | ୦ | ୦ | ୦ | ୨ | | |
| ୧୮. | ମିଜୋରାମ | ୦ | ୨ | ୧ | ୨ | ୧ | ୦ | ୦ | ୨ | | |
| ୧୯. | ନାଗାଲାଣ୍ଡ | ୦ | ୦ | ୧ | ୧ | ୦ | ୦ | ୨ | ୧ | | |
| ୨୦. | ଓଡ଼ିଶା | ୨୬୬ | ୨୪୦ | ୨୬୪ | ୨୯୩ | ୨୮୩ | ୩୦୨ | ୨୭୨ | ୨୯୧ | | |
| ୨୧. | ପଞ୍ଜାବ | ୩୧୨ | ୨୦୮ | ୨୧୫ | ୨୪୩ | ୨୮୨ | ୨୮୨ | ୩୮୪ | ୪୪୯ | | |
| ୨୨. | ରାଜସ୍ଥାନ | ୨୭୦ | ୩୩୧ | ୫୫୧ | ୪୪୪ | ୪୪୪ | ୩୩୬ | ୨୯୪ | ୩୧୧ | | |
| ୨୩. | ସିକିମ୍ | ୧୬ | ୧୦ | ୧୬ | ୨୫ | ୨୧ | ୭ | ୧୨ | ୧୬ | | |
| ୨୪. | ତାମିଲନାଡୁ | ୩୬ | ୩୨ | ୪୯ | ୪୩ | ୯୭ | ୧୫୨ | ୯୩ | ୧୨୮ | | |
| ୨୫. | ତ୍ରିପୁରା | ୦ | ୧୫ | ୦ | ୨ | ୦ | ୨ | ୨ | ୧ | | |
| ୨୬. | ଉତ୍ତରପ୍ରଦେଶ | ୪୨ | ୬୬ | ୫୪ | ୧୨୨ | ୧୩୭ | ୪୪ | ୨୬ | ୪୧ | | |
| ୨୭. | ଉତ୍ତରାଞ୍ଚଳ | -- | -- | -- | ୪ | ୫ | ୩ | ୧୧ | ୮ | | |
| ୨୮. | ପଶ୍ଚିମବଙ୍ଗ | ୬ | ୩ | ୩ | ୩ | ୦ | ୧ | ୦ | ୦ | | |

କେନ୍ଦ୍ରଶାସିତ ଅଞ୍ଚଳ

| | | | | | | | | | |
|---|---|---|---|---|---|---|---|---|---|
| ୧. | ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜ | ୦ | ୧ | ୦ | ୦ | ୦ | ୩ | ୩ | ୨ |
| ୨. | ଚଣ୍ଡୀଗଡ଼ | ୩ | ୧ | ୬ | ୮ | ୩ | ୬ | ୫ | ୭ |
| ୩. | ଦାଦ୍ରା ଏବଂ ନଗର ହାବେଲୀ | ୧ | ୨ | ୦ | ୦ | ୦ | ୧ | ୧ | ୦ |
| ୪. | ଦାମନ ଓ ଡିଉ | ୦ | ୨ | ୦ | ୦ | ୧ | ୦ | ୦ | ୦ |
| ୫. | ଦିଲ୍ଲୀ | ୪୮ | ୫୧ | ୬୫ | ୭୦ | ୫୬ | ୭୭ | ୬୨ | ୬୧ |
| ୬. | ଲାକ୍ଷାଦ୍ୱୀପ | ୦ | ୦ | ୦ | ୧ | ୦ | ୧ | ୦ | ୦ |
| ୭. | ପଣ୍ଡିଚେରୀ | ୩ | ୦ | ୨ | ୩ | ୩ | ୧ | ୧ | ୩ |

ସାରଣୀ-୨

| କ୍ର.ନଂ. | ବିଭାଗ | ୨୦୦୩ | ୨୦୦୪ | ୨୦୦୫ | ୨୦୦୬ | ୨୦୦୭ |
|---|---|---|---|---|---|---|
| ୧. | ରାଜସ୍ୱ ଓ ଅବକାରୀ | ୫୩ | ୨୨ | ୫୮ | ୩୫ | ୪୮ |
| ୨. | ପଞ୍ଚାୟତିରାଜ | ୪୬ | ୮୬ | ୬୨ | ୬୩ | ୬୪ |
| ୩. | ଜଳସମ୍ପଦ | ୩୬ | ୯ | ୯ | ୧୬ | ୨୧ |
| ୪. | ସମବାୟ | ୨୯ | ୨୩ | ୨୩ | ୦୭ | ୧୯ |
| ୫. | ଗୃହ (ଆରକ୍ଷୀ) | ୧୭ | ୧୪ | ୧୩ | ୨୨ | ୧୭ |
| ୬. | ଗୃହ ନିର୍ମାଣ ଓ ନଗର ଉନ୍ନୟନ | ୧୩ | ୧୩ | ୧୮ | ୧୮ | ୨୧ |
| ୭. | ଶିକ୍ଷା | ୧୩ | ୧୨ | ୦୮ | ୧୧ | ୧୬ |
| ୮. | ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ | ୧୨ | ୧୨ | ୦୯ | ୨୦ | ୧୬ |
| ୯. | ପୂର୍ତ୍ତ | ୯ | ୧୨ | ୧୩ | ୦୮ | ୧୩ |
| ୧୦. | ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ | ୦୫ | ୧୦ | ୦୭ | ୨୮ | ୧୪ |

ନିର୍ଦ୍ଦେଶକ
ରାଜ୍ୟ ଦୁର୍ନୀତି ନିବାରଣ ନିର୍ଦ୍ଦେଶାଳୟ
କଟକ

# ସ୍ୱାଧୀନତାର ୬୦ ବର୍ଷ ପରେ ଭାରତୀୟ ଗଣତନ୍ତ୍ର

ଡକ୍ଟର ମିନତୀ ପଣ୍ଡା

**ସେ**ଦିନ ପଲାସୀ ରଣକ୍ଷେତ୍ରରେ ବ୍ରିଟିଶ୍ ସୈନିକ ଲର୍ଡ଼ କ୍ଲାଇବ୍‌ଙ୍କର କୂଟନୀତି ପରାଜିତ କରିଥିଲା ସଂଖ୍ୟାଧିକ ଭାରତୀୟ ସୈନକମାନଙ୍କୁ । ମିର୍ଜାଫର୍‌ଙ୍କର ବିଶ୍ୱାସଘାତକତା ଓ ଅନଭିଜ୍ଞ ସିରାଜଉଦ୍ଦୌଲାଙ୍କ ନେତୃତ୍ୱରେ ଭାରତୀୟ ସେନା ଭୂଲୁଣ୍ଠିତ ହେଲା । ଏହାର ସ୍ଥୂଳପରିଣାମରେ ଭାରତୀୟ ଉପମହାଦେଶରେ ବ୍ରିଟିଶ ରାଜତ୍ୱର ଚାରା ରୋପିତ ହେଲା ୧୭୫୭ ମସିହାରେ । ଏହି କ୍ଷୁଦ୍ର ଚାରା ଧୀରେ ଧୀରେ ପରିଣତ ହେଲା ଏକ ମହାଦ୍ରୁମରେ । ଠିକ୍ ୧୦୦ ବର୍ଷ ପରେ ୧୮୫୭ ମସିହାରେ ବ୍ରିଟିଶ୍ ରାଜ୍ ବିରୁଦ୍ଧରେ ସଶସ୍ତ୍ର ଆନ୍ଦୋଳନର ଗୁଞ୍ଜରଣ ମୁଖରିତ କରିଥିଲା ଭାରତର ଇତିହାସକୁ । ସେତେବେଳକୁ ଇଂରେଜମାନେ ଭାରତୀୟ ମାନଚିତ୍ରକୁ ଏକ ରାଜନୈତିକ ଅସ୍ତିତ୍ୱ ଭାବରେ ନିଜ ଅଧୀନରେ ରଖି ସାରିଥିଲେ । ୧୮୫୭ ମସିହାର ଏହି ବିଦ୍ରୋହକୁ ଇଂରେଜମାନେ ସିପାହୀ ବିଦ୍ରୋହ ନାମରେ ନାମିତ କରିଥିଲେ ମଧ୍ୟ ମୁଖ୍ୟତଃ ଏଥିରେ ନେତୃତ୍ୱ ନେଇଥିଲେ ବିଭିନ୍ନ କାରଣରୁ ନିଜର ରାଜ୍ୟ ଓ କ୍ଷମତା ହରେଇଥିବା କିଛି ବ୍ୟକ୍ତିବିଶେଷ । ଏହା ପଛରେ ଜନସମର୍ଥନ ମଧ୍ୟ ଥିଲା । ସର୍ବୋପରି ଏହାର ପରିଣତି ସ୍ୱରୂପ ଇଷ୍ଟଇଣ୍ଡିଆ କମ୍ପାନୀର ରାଜତ୍ୱ ଶେଷ ହୋଇଥିଲା । ଭାରତ ଶାସନ ହସ୍ତାନ୍ତରିତ ହୋଇଥିଲା, ଇଂରେଜ ସରକାରଙ୍କ ଅଧୀନକୁ ।

ଇଂରେଜ ଗଣତନ୍ତ୍ରର ଛାପ ଭାରତ ଶାସନ ବ୍ୟବସ୍ଥାକୁ ପ୍ରଭାବିତ କରିଥିଲା । ୧୮୬୧ ମସିହାରେ ଭାରତ ଶାସନ ଆଇନ୍ ଶାସନ ବ୍ୟବସ୍ଥାରେ କିଛି ପରିବର୍ତ୍ତନ ଆଣିଥିଲା । ୧୮୮୫ ମସିହାରେ କଂଗ୍ରେସର ଅଭ୍ୟୁଦୟ ପରେ ଭାରତ ଶାସନରେ କିଛି ମୋଡ଼ ପରିଲକ୍ଷିତ ହେଲା । ଗାନ୍ଧିଜୀଙ୍କ ନେତୃତ୍ୱରେ କଂଗ୍ରେସର ଆଭିମୁଖ୍ୟ ଭାରତୀୟମାନଙ୍କୁ ଏକ ସୁସ୍ଥ ଗଣତନ୍ତ୍ର ସ୍ଥାପନ ପାଇଁ ପ୍ରେରଣା ଦେଇଥିଲା । ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ସତ୍ୟାଗ୍ରହ ଥିଲା ଆତ୍ମିକ ଶକ୍ତିର ପ୍ରତୀକ । ଏହାଦ୍ୱାରା ସେ ଚମ୍ପାରନ୍ ଓ ଖେଡ଼ାଠାରେ କୃଷକମାନଙ୍କ ମନରେ ଭରି ଦେଇଥିଲେ ଆତ୍ମବିଶ୍ୱାସ । ପ୍ରଥମ ମହାସମର ପରେ ତାଙ୍କର ପ୍ରତ୍ୟକ୍ଷ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ଇଂରେଜ ଶାସନର ମୂଳଦୁଆକୁ ହଲେଇ ଦେଇଥିଲା । ଏହାପରେ ଆଇନ ଅମାନ୍ୟ ଆନ୍ଦୋଳନର ଦିଗନ୍ତ ବିସ୍ତାରୀ ପରିଣାମ ସ୍ୱରୂପ ଭାରତୀୟ ରାଜନୀତିରେ ହଇଚଇ ସୃଷ୍ଟି ହୋଇଥିଲା । ଏହି ସମୟରେ ବିଶ୍ୱ ଇତିହାସରେ ଦ୍ୱିତୀୟ ମହାସମର ତଥା ଜାତିସଂଘର ପ୍ରତିଷ୍ଠା ବିଶ୍ୱରେ ଶୋଷଣ ଓ କଷଣ ବିରୋଧରେ ନିଜର ସ୍ୱର ଉତ୍ତୋଳନ କରିଥିଲା । ଫଳସ୍ୱରୂପ ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ପ୍ରତି ସମର୍ଥନ ବୃଦ୍ଧି ପାଇଥିଲା । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖର ଶୁଭ ଅବସରରେ ସ୍ୱାଧୀନ ଭାରତର ଜାତୀୟ ପତାକା ଲାଲକିଲ୍ଲାରେ ନିଜର ଅସ୍ତିତ୍ୱକୁ ଜାହିର୍ କରିଥିଲା ।

ସ୍ୱାଧୀନ ଭାରତର ଗଣତାନ୍ତ୍ରିକ ବିକାଶରେ ଗାନ୍ଧିଜୀଙ୍କର ଏକ ପ୍ରମୁଖ ଭୂମିକା ରହିଅଛି । କଂଗ୍ରେସ୍ ଅନୁଷ୍ଠାନକୁ ଏକ ଶ୍ରେଣୀ ଭିତ୍ତିକ ଅନୁଷ୍ଠାନରୁ ଏକ ସାମୂହିକ ଆନ୍ଦୋଳନରେ ସେ ପରିବର୍ତ୍ତିତ କରିଥିଲେ । ଏହାସହିତ ଏକ ସଫଳ ଗଣତନ୍ତ୍ରର ଭିତ୍ତିଭୂମି ଓ ମୂଳଦୁଆକୁ ସୁଦୃଢ଼ କରିବା ପାଇଁ ସେ ମହିଳା ତଥା ଅନୁନ୍ନତ ବର୍ଗର ବିକାଶ ଉପରେ ଗୁରୁତ୍ୱ ଦେଇଥିଲେ । ଜାତୀୟ ଆନ୍ଦୋଳନରେ ଅଂଶଗ୍ରହଣ କରିଥିବା ମହିଳାମାନେ ନିଜର ଅସ୍ମିତାକୁ ମଧ୍ୟ ଜାହିର୍ କରିଥିଲେ । ଗାନ୍ଧିଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥ, ଆଚାର୍ଯ୍ୟ କ୍ରିପାଳିନୀ, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ରାମ ମନୋହର ଲୋହିଆ, ଶ୍ରୀ ଜୟପ୍ରକାଶ ନାରାୟଣ, ପୁରୁଷୋତ୍ତମ ଦାସ ଟଣ୍ଡନ୍ ଓ ଲାଲ୍‌ବାହାଦୂର ଶାସ୍ତ୍ରୀ ଇତ୍ୟାଦି । ଭାରତୀୟ ଗଣତନ୍ତ୍ରକୁ ସଫଳ କରିବା ପାଇଁ ଭାରତୀୟ ସମ୍ବିଧାନ ପ୍ରଣୀତ ହୋଇଥିଲା ଯାହା ୧୯୫୦ ମସିହା ଜାନୁଆରୀ ୨୬ ତାରିଖରୁ । ନୀତିଗତ ଭାବରେ ଭାରତୀୟମାନଙ୍କୁ ନିଜର ଅଧିକାର ସମ୍ବନ୍ଧରେ ସଚେତନ କରିବା ପାଇଁ

ଭାରତୀୟ ସମ୍ବିଧାନରେ ଏକ ନିର୍ଦ୍ଦିଷ୍ଟ ଅଧ୍ୟାୟ ରହିଅଛି । ଭାରତୀୟ ସମ୍ବିଧାନର ଧାରା ୧୪ ଅନୁସାରେ ପ୍ରତ୍ୟେକ ଭାରତୀୟ ଜାତି, ଧର୍ମ, ବର୍ଣ୍ଣ ଓ ଲିଙ୍ଗ ନିର୍ବିଶେଷରେ ଆଇନ ନିକଟରେ ସମାନ । ଏହାବ୍ୟତୀତ ମାନବାଧିକାରର ଅନ୍ୟାନ୍ୟ ଦିଗ ପ୍ରତି ମଧ୍ୟ ଭାରତୀୟ ସମ୍ବିଧାନ ଦୃଷ୍ଟି ଦେଇଥାଏ ।

ଏହି ପରିପ୍ରେକ୍ଷୀରେ ଏକ ସଫଳ ଗଣତନ୍ତ୍ରର ବିକାଶଧାରାରେ ଏହାର ବ୍ୟବସ୍ଥାପକ କାର୍ଯ୍ୟନିର୍ବାହୀ ଓ ନ୍ୟାୟପାଳିକାର ଏକ ପ୍ରମୁଖ ଭୂମିକା ରହିଅଛି । ଏହା ସହିତ ଗଣମାଧ୍ୟମ ମଧ୍ୟ ଗଣତନ୍ତ୍ରର ପରମ୍ପରାକୁ ସୁସ୍ଥ ରଖିବାରେ ସାହାଯ୍ୟ କରେ । ମାନବାଧିକାରର ସୁରକ୍ଷା ପାଇଁ ନ୍ୟାୟପାଳିକାର ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଓ କ୍ଷମତା ରହିଅଛି । ଏହାର ସଫଳ ପରିଚାଳନା ପାଇଁ ଦାୟିତ୍ୱ ସଂପନ୍ନ ବିଚାରପତି, ସୁସ୍ଥ ଶାସନ ବ୍ୟବସ୍ଥା ଓ ଗଣସଚେତନତା ବହୁଭାବରେ ଆବଶ୍ୟକ । ଗଣ ସଚେତନତାର ମୁଖ୍ୟ ଆଧାର ହେଉଛି ଶିକ୍ଷା । ଏହା ଗଣତନ୍ତ୍ରକୁ ସୁସ୍ଥ, ସବଳ ଓ ସୁଦୃଢ଼ କରିବା ସହିତ ବିକାଶଧାରାକୁ ମଧ୍ୟ ତ୍ୱରାନ୍ୱିତ କରିଥାଏ । ଶିକ୍ଷା ଦ୍ୱାରା ମାନବସମ୍ବଳର ବିକାଶ ଘଟିଥାଏ ଓ ଜ୍ଞାନଭିତ୍ତିକ ଅର୍ଥନୀତିର ସଂପ୍ରସାରଣ ହୁଏ । ଅର୍ଥନୈତିକ ବିକାଶ ମାଧ୍ୟମରେ ପ୍ରତ୍ୟେକଙ୍କୁ ଏକ ଗୁଣାତ୍ମକ ଜୀବନଧାରା ଉପଭୋଗର ମଧ୍ୟ ସୁଯୋଗ ମିଳିଥାଏ ।

ଏହି ପରିପ୍ରେକ୍ଷୀରେ ଏକ ସଫଳ ଗଣତନ୍ତ୍ରର ବିକାଶଧାରାରେ ଏହାର ବ୍ୟବସ୍ଥାପକ କାର୍ଯ୍ୟନିର୍ବାହୀ ଓ ନ୍ୟାୟପାଳିକାର ଏକ ପ୍ରମୁଖ ଭୂମିକା ରହିଅଛି । ଏହା ସହିତ ଗଣମାଧ୍ୟମ ମଧ୍ୟ ଗଣତନ୍ତ୍ରର ପରମ୍ପରାକୁ ସୁସ୍ଥ ରଖିବାରେ ସାହାଯ୍ୟ କରେ ।

ଯୋଜନା ମାଧ୍ୟମରେ ଭାରତୀୟ ଅର୍ଥନୀତିର ବିକାଶକୁ ଜାରି ରଖି ଗଣତନ୍ତ୍ରକୁ ସୁଦୃଢ଼ କରାଯାଇଥାଏ । ଅଧିକ ସୁଯୋଗ ସୃଷ୍ଟି କରିବା ସହିତ ଜୀବନଯାପନର ମାନକୁ ଉନ୍ନତ କରିବା ଯୋଜନାର ଆଭିମୁଖ୍ୟ । ପ୍ରଥମ ଓ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା ସମୟରେ ବ୍ୟକ୍ତିଗତ ତଥା ଜାତୀୟ ଆୟବୃଦ୍ଧି ନିମନ୍ତେ ପ୍ରଚେଷ୍ଟା ଜାରି କରାଯାଇଥିଲା । ତୃତୀୟ ପଞ୍ଚବାର୍ଷିକ ଯୋଜନା ସମୟରେ ଜାତୀୟ ଆୟକୁ ଦ୍ୱିଗୁଣିତ କରିବା ଓ କୃଷି ବ୍ୟତିରେକ ଅଧିକ ନିଯୁକ୍ତି ସୁଯୋଗ ସୃଷ୍ଟି କରିବା ପାଇଁ ଲକ୍ଷ୍ୟ ରଖାଯାଇଥିଲା । ୧୪ ବର୍ଷ ବୟସ ପର୍ଯ୍ୟନ୍ତ ସମସ୍ତଙ୍କୁ ମୌଳିକ ଶିକ୍ଷା ପ୍ରଦାନ ଉପରେ ମଧ୍ୟ ଗୁରୁତ୍ୱ ଆରୋପ କରାଯାଇଥିଲା । ଚତୁର୍ଥ ପଞ୍ଚବାର୍ଷିକ ଯୋଜନା (୧୯୬୯-୭୪) ସମୟରେ କୃଷି ଉତ୍ପାଦନ ବୃଦ୍ଧି ଉପରେ ଗୁରୁତ୍ୱ ଦିଆଯାଇଥିଲା । ପଞ୍ଚମ ପଞ୍ଚବାର୍ଷିକ ଯୋଜନା, ଦାରିଦ୍ର୍ୟ ଦୂରୀକରଣ ଓ ଆତ୍ମନିର୍ଭରଶୀଳ ହେବା ପାଇଁ ପ୍ରୋତ୍ସାହନ ଦେଇଥିଲା । ଷଷ୍ଠ ପଞ୍ଚବାର୍ଷିକ ଯୋଜନା ସମୟରେ ଦାରିଦ୍ର୍ୟ ଦୂରୀକରଣ ସହ ସାକ୍ଷରତା ଅଭିଯାନର ଆରମ୍ଭ ଓ ସଂପୂର୍ଣ୍ଣ ନିଯୁକ୍ତି ଉପରେ ଗୁରୁତ୍ୱ ଦିଆଯାଇଥିଲା । ଖାଦ୍ୟ ଉପରେ ଆତ୍ମନିର୍ଭରଶୀଳ ହେବା, ଶିଳ୍ପର ଆଧୁନିକୀକରଣ, ଗ୍ରାମ୍ୟ ବିକାଶ ଇତ୍ୟାଦିଦ୍ୱାରା ସାମର୍ଥ୍ୟର ବିକାଶ ଓ ସମୃଦ୍ଧିର ପରିସରକୁ ବୃଦ୍ଧି କରାଯାଇଥିଲା । ଦଶମ ଯୋଜନା କାଳରେ ବ୍ୟକ୍ତିଗତ ଆୟକୁ ଦ୍ୱିଗୁଣିତ କରିବାର ଆଭିମୁଖ୍ୟ ରଖାଯାଇଥିଲା । ଜନସଂଖ୍ୟା ନିୟନ୍ତ୍ରଣ, ନିଯୁକ୍ତି ସୁଯୋଗର ଅଭିବୃଦ୍ଧି, ସାକ୍ଷରତା ହାର ବୃଦ୍ଧି ମାଧ୍ୟମରେ ସଚେତନତା ସୃଷ୍ଟି କରିବାର ଲକ୍ଷ୍ୟ ରଖାଯାଇଥିଲା । ଦଶମ ଯୋଜନାର କାର୍ଯ୍ୟକାଳ ୨୦୦୭ରେ ଶେଷ ହୋଇଛି । ଏହି ସମୟରେ ସ୍ୱାସ୍ଥ୍ୟସେବାରେ ଉନ୍ନତି ଦ୍ୱାରା ମାତୃ ଓ ଶିଶୁ ମୃତ୍ୟୁହାର ରୋକିବା ପାଇଁ ମଧ୍ୟ ଚେଷ୍ଟା କରାଯାଇଥିଲା । ଦଶମ ଯୋଜନା ଶେଷ ପରେ ସେହି ଲକ୍ଷ୍ୟ ପୂରଣ କେତେ ଦୂର ହୋଇପାରିଛି, ତାହା ଅନୁଧ୍ୟାନ କରାଯିବା ଉଚିତ୍ ।

ତେଣୁ ୬୦ ବର୍ଷର ସ୍ୱାଧୀନତା ପ୍ରାପ୍ତି ପରେ ଭାରତୀୟ ଗଣତନ୍ତ୍ର ଆଜି ଏକ ଦୋଛକିରେ ଦଣ୍ଡାୟମାନ । ଜଗତୀକରଣ, ଦ୍ରୁତଶିଳ୍ପାୟନ ମାଧ୍ୟମରେ ଅର୍ଥନୈତିକ ବିକାଶର ଆହ୍ୱାନ, ଭାରତୀୟ ଗଣତନ୍ତ୍ରକୁ ବିକାଶର ଧାରାରେ ସାମିଲ୍ ହେବା ପାଇଁ ପ୍ରତିମୁହୂର୍ତ୍ତରେ ନିବେଦନ କରୁଅଛି । ଏହାସହିତ ଆମ ନିକଟରେ ରହିଅଛି ବହୁ ସମସ୍ୟା । ଦ୍ରୁତ ଜନସଂଖ୍ୟାର ଅଭିବୃଦ୍ଧି, ପର୍ଯ୍ୟାବରଣର କ୍ଷୟ ଓ ତାପମାତ୍ରାର ବୃଦ୍ଧି, ନଦୀ ଜଳର ପ୍ରଦୂଷଣ ତଥା ଅର୍ଥନୀତି ବିକାଶରେ ଅସମତା । ଶିକ୍ଷା, ସ୍ୱାସ୍ଥ୍ୟ ତଥା ମାନବ ମଙ୍ଗଳ ସୂଚକର ଉନ୍ନତି କେବଳ ଗଣତନ୍ତ୍ରକୁ ସମୃଦ୍ଧ ଓ ସୁଦୃଢ଼ କରିପାରିବ । ଭାରତୀୟମାନଙ୍କର ଆକାଂକ୍ଷା ଓ ଅଭୀପ୍‌ସାକୁ ପୂରଣ କରିବାର ଗୁରୁଦାୟିତ୍ୱ ନେତୃବର୍ଗଙ୍କର । ଭାରତୀୟ ନେତା, ନିଜର ନୀତି ମାଧ୍ୟମରେ ଭାରତକୁ ବିଶ୍ୱ ଦରବାରରେ ଏକ ଉନ୍ନତ ରାଷ୍ଟ୍ରଭାବରେ ପରିଗଣିତ କରିବାର ସଂକଳ୍ପ ଆଜିର ଧ୍ୟେୟ ହେଉ । ସରଳ ଜୀବନଯାପନ, ଉନ୍ନତ ଚିନ୍ତାଦ୍ୱାରା ଜ୍ଞାନଭିତ୍ତିକ ଅର୍ଥନୀତିରେ ମାନବ ସମ୍ବଳର ବିକାଶ ଘଟାଇ ଆମେ ଏକ ଉନ୍ନତ ରାଷ୍ଟ୍ର ଗଠନ କରିପାରିବା ପାଇଁ ରାଜ୍ୟ ସରକାର ଯେଉଁ ଲକ୍ଷ୍ୟ ରଖିଛନ୍ତି, ତାହା ଯଥାର୍ଥ ବୋଲି ମନେହୁଏ ।

**ସହାୟକ ଗ୍ରନ୍ଥସୂଚୀ**

୧. Constitutuent Assembly debates - Dr. Ambedkar
୨. The Hindustan Times - 19th May 1967
୩. Economic and Political Weekly (October 27, November 2, 2007) - Vol- XLII No.43
୪. The Week, Silver Jubilee Special, December 30, 2007, Vol-I
୫. Business World 31st December 2007
୬. In Defence of Globalisation - P.N Bhagwati

ବରିଷ୍ଠ ଅଧ୍ୟାପିକା, ଇତିହାସ ବିଭାଗ
ସାମନ୍ତ ଚନ୍ଦ୍ରଶେଖର ସ୍ୱୟଂଶାସିତ ମହାବିଦ୍ୟାଳୟ
ପୁରୀ

# ମକର ସଂକ୍ରାନ୍ତି

ଶ୍ରୀବିଦ୍ୟାସ୍ୱାମୀ ମହାମେଧାନନ୍ଦନାଥ ସରସ୍ୱତୀ

**ସୂ**ର୍ଯ୍ୟଙ୍କର ଏକ ରାଶିରୁ ଅନ୍ୟ ରାଶିରେ ପ୍ରବେଶ ଦିନକୁ ସଂକ୍ରାନ୍ତି କୁହାଯାଏ । ଗୋଟିଏ ସୌରବର୍ଷରେ ସୂର୍ଯ୍ୟ ଯେଉଁ ଯେଉଁ ଦିନ କ୍ରମଶଃ ମେଷାଦି ବାରଗୋଟି ରାଶିରେ ପ୍ରବେଶ କରନ୍ତି, ସେହି ସେହି ଦିନ ଯଥାକ୍ରମେ ଉକ୍ତ ରାଶି ନାମରେ ସଂକ୍ରାନ୍ତି ହୋଇଥାଏ । ଏଥିରୁ ମେଷ ଓ ତୁଳା ସଂକ୍ରାନ୍ତିକୁ 'ବିଷୁବତ୍', ବୃଷ, ସିଂହ, ବିଛା ଓ କୁମ୍ଭ ସଂକ୍ରାନ୍ତିକୁ 'ବିଷ୍ଣୁପଦୀ', ମିଥୁନ, କନ୍ୟା, ଧନୁ ଓ ମୀନ ସଂକ୍ରାନ୍ତିକୁ 'ଷଡ଼ଶୀତି' କୁହାଗଲା ବେଳେ କର୍କଟ ସଂକ୍ରାନ୍ତିକୁ ସୂର୍ଯ୍ୟଙ୍କର 'ଦକ୍ଷିଣାୟନ' ଏବଂ ମକର ସଂକ୍ରାନ୍ତିକୁ 'ଉତ୍ତରାୟଣ' ସଂକ୍ରାନ୍ତି ବୋଲି କୁହାଯାଇଥାଏ । ଏହି ଦିନଠାରୁ ସୂର୍ଯ୍ୟଙ୍କର ଉତ୍ତରାୟଣ ଗତି ଆରମ୍ଭ ହୁଏ । ବିଜ୍ଞାନମତରେ ସୂର୍ଯ୍ୟ ଡିସେମ୍ବର ମାସ ୨୩ ତାରିଖ ଦିନ ପୃଥିବୀର ଦକ୍ଷିଣଗୋଲାର୍ଦ୍ଧର ମକରକ୍ରାନ୍ତି ଉପରେ ସିଧାସଳଖ ରହି ତା'ପରେ ଉତ୍ତରାୟଣ ହୋଇଥାଆନ୍ତି । କିନ୍ତୁ ହିନ୍ଦୁ ଜ୍ୟୋତିର୍ବିଜ୍ଞାନ ମତରେ ସୂର୍ଯ୍ୟ ଜାନୁଆରୀ (ମାଘ) ମାସର ପ୍ରାୟ ୧୪/୧୫ ତାରିଖରେ ନକ୍ଷତ୍ର-ନିଷ୍ଠ ନିରୟଣ ରାଶିଚକ୍ରର ମକର ରାଶିରେ ପ୍ରବେଶ କରନ୍ତି । ହିନ୍ଦୁଧର୍ମଶାସ୍ତ୍ରୀୟ ସକଳ ବ୍ୟବସ୍ଥା ଏହି ନକ୍ଷତ୍ରନିଷ୍ଠ ନିରୟଣ ରାଶିଚକ୍ର ଅନୁସାରେ ନିୟନ୍ତ୍ରିତ ହେଉଥିବାରୁ ତଦନୁସାରେ ଜାନୁଆରୀ ମାସର ଉକ୍ତ ଦିନ ଆମ ଭାରତର ସର୍ବତ୍ର 'ମକର ସଂକ୍ରାନ୍ତି' ପାଳିତ ହେଉଛି । ଏହି ଦିନ ସୂର୍ଯ୍ୟ ନିରୟଣ ଧନୁରାଶିର ଅନ୍ତିମ ୩୦ତମ ଅଂଶ ଅତିକ୍ରମ କରି ନିରୟଣ ମକର ରାଶିରେ ସଂକ୍ରମଣ ବା ସଂଚାର କରନ୍ତି ବୋଲି ଏହାକୁ 'ମକର ସଂକ୍ରାନ୍ତି' କୁହାଯାଏ । ସୂର୍ଯ୍ୟ ଏହି ମକର ରାଶିରେ ପ୍ରାୟ ଏକ ମାସ କାଳ ରହନ୍ତି ବୋଲି ଏହି ମାସଟିକୁ ମଧ୍ୟ 'ମକରମାସ' କୁହାଯାଏ ।

ବିଜ୍ଞାନମତରେ ସୂର୍ଯ୍ୟ ଡିସେମ୍ବର ମାସ ୨୩ ତାରିଖ ଦିନ ପୃଥିବୀର ଦକ୍ଷିଣଗୋଲାର୍ଦ୍ଧର ମକରକ୍ରାନ୍ତି ଉପରେ ସିଧାସଳଖ ରହି ତା'ପରେ ଉତ୍ତରାୟଣ ହୋଇଥାଆନ୍ତି । କିନ୍ତୁ ହିନ୍ଦୁ ଜ୍ୟୋତିର୍ବିଜ୍ଞାନ ମତରେ ସୂର୍ଯ୍ୟ ଜାନୁଆରୀ (ମାଘ) ମାସର ପ୍ରାୟ ୧୪/୧୫ ତାରିଖରେ ନକ୍ଷତ୍ର-ନିଷ୍ଠ ନିରୟଣ ରାଶିଚକ୍ରର ମକର ରାଶିରେ ପ୍ରବେଶ କରନ୍ତି ।

'ମକର ଦିନ ହୁଏ ବକର' ଉକ୍ତିରୁ ସୂର୍ଯ୍ୟଙ୍କ ଦକ୍ଷିଣାୟନ ଗତିକ୍ରମରେ ହେଉଥିବା ଦିନ, ତାଙ୍କର ଉତ୍ତରାୟଣ ଫଳରେ 'ବକର' ଅର୍ଥାତ୍ ବକ୍ର ବା ପରିବର୍ତ୍ତନ ହୋଇ ମକର ସଂକ୍ରାନ୍ତିଠାରୁ ଶୀତଦିନର ଛୋଟ ଦିନ କ୍ରମଶଃ ବଢ଼ି ବଢ଼ି ସୂର୍ଯ୍ୟଙ୍କ ବିଷୁବରେଖା ଉପରେ ଅବସ୍ଥାନ ବେଳେ ଦିନରାତି ସମାନ ହୁଏ ଏବଂ ପରେ କର୍କଟକ୍ରାନ୍ତିରେ କର୍କଟ ସଂକ୍ରାନ୍ତି ବେଳକୁ ଦିନ ବଡ଼ ଓ ରାତି ସାନ ହୁଏ । ମକର ମାସରେ ସୂର୍ଯ୍ୟ କିରଣ ପ୍ରଖର ହୁଏ ବୋଲି 'ମକରେ ପ୍ରଖରୋ ରବିଃ' କୁହାଯାଏ । ସକଳ ଜୀବଜଗତର ପ୍ରାଣ ଶକ୍ତି ସୂର୍ଯ୍ୟ ଏହିଠାରୁ ଉତ୍ତରାୟଣ ଯାତ୍ରା କରନ୍ତି ଓ ଏବଂ ଏହି ଉତ୍ତରାୟଣ ଦିନ ସ୍ୱର୍ଗଦ୍ୱାର ଖୋଲାଥାଏ ବୋଲି ଲୋକ ବିଶ୍ୱାସ ଯୋଗୁଁ ଏହି ମକର ସଂକ୍ରାନ୍ତିରେ ସୂର୍ଯ୍ୟ ଦେବତାଙ୍କୁ ଭାରତୀୟ ଜନତା ମକର ଚାଉଳ ଓ ତିଳଖଜା ଦେଇ ପୂଜା କରନ୍ତି, ଅର୍ଘ୍ୟ ବାଢ଼ନ୍ତି ଏବଂ ଭକ୍ତି ନିବେଦନ କରନ୍ତି । ନୂଆ ଅରୁଆ ଚାଉଳ ସହ ନୂଆ ଗୁଡ଼, ଛେନା, ଦୁଧ, ଦହି, ଆଖୁ, ନଡ଼ିଆ, ରାଶି, ଅଦା ଓ କର୍ପୂର ପ୍ରଭୃତି ମିଶାଇ ଏହି ସୁସ୍ୱାଦୁ ମକର ଚାଉଳ ତିଆରି କରାଯାଇଥାଏ । ଶାରଦ ଧାନ ପୌଷ ମାସରେ ଅମଳ ହେବା ପରେ ନୂଆଁ ଚାଉଳରେ ପ୍ରସ୍ତୁତ ଏହି ମକର ଚାଉଳ ନବୀନ ଉଦ୍ଦୀପନାର ପ୍ରତୀକ । ମକର ସଂକ୍ରାନ୍ତିଠାରୁ ସୂର୍ଯ୍ୟ କିରଣ ଆମ ପକ୍ଷରେ ଦିନକୁ ଦିନ ଅଧିକରୁ ଅଧିକତର ସୁଲଭ ହେବ ଏବଂ ଏହି ସୂର୍ଯ୍ୟକିରଣ ପାଇ ଆମର ପାକକ୍ରିୟା ଉତ୍ତମ ରୂପେ ସଂଚାଳିତ ହେବ ବୋଲି ବୋଧହୁଏ ଏହି ମକର ଚାଉଳ ସେବନର ବିଧି ରହିଛି । ଏହି ଦିନ ଲୋକମାନେ ପରସ୍ପରକୁ ଧର୍ମଦେବତା ସୂର୍ଯ୍ୟଙ୍କ ପ୍ରସାଦ ମକର ଚାଉଳ ଖୁଆଇ ମକର ବସନ୍ତି ଏବଂ ଚିରଦିନ ଲାଗି ବନ୍ଧୁତା ସ୍ଥାପନ କରନ୍ତି ।

ମକର ସଂକ୍ରାନ୍ତି ବେଳକୁ ଶୀତକାଳୀନ ଖରିଫ୍ ଫସଲ ଅମଳ ହୋଇ ଖଳାକୁ ଆସିଥାଏ । ତେଣୁ ଚାଷୀମାନେ ଆନନ୍ଦରେ ଏହି ମକର ସଂକ୍ରନ୍ତିଟିକୁ ପାଳନ କରିଥାଆନ୍ତି । ନୂଆ ଲୁଗା ପିନ୍ଧି ସୂର୍ଯ୍ୟ ଦେବତାଙ୍କୁ ଅର୍ଘ୍ୟ ବାଢ଼ିବା ପରେ ବିଭିନ୍ନ ଦେବ ମନ୍ଦିରକୁ ଯାଇ ନିଜର ଓ ନିଜ ପରିବାରର ମଙ୍ଗଳ କାମନା କରିଥାଆନ୍ତି । ନୂଆ ଶସ୍ୟରେ ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ କରି କୃଷକମାନେ ଆଜିର ଏହି ଦିନଟିରେ ବନ୍ଧୁ ମିଳନ କରିଥାଆନ୍ତି । ଏଣୁ ମକର ସଂକ୍ରାନ୍ତିଟିକୁ ଏକ କୃଷିପର୍ବ ବୋଲି ଗ୍ରହଣ କରାଯାଇପାରେ ।

ଦକ୍ଷିଣ ଭାରତରେ ଏହି ମକର ସଂକ୍ରାନ୍ତିଟିକୁ ନବବର୍ଷର ଆରମ୍ଭ ଦିନ ବୋଲି ଗ୍ରହଣ କରିଥାଆନ୍ତି । ନୂଆ ବୋହୂମାନେ ବାପ ଘରକୁ ଯାଇ ବାପା, ମା', ଭାଇ ଓ ଭଉଣୀଙ୍କ ସହିତ ମକରୋତ୍ସବ କରି ସେମାନଙ୍କର ଝିଅ ଜୀବନର କୋମଳ ସ୍ମୃତିଟିକୁ ବଞ୍ଚାଇ ରଖିବା ସକାଶେ ଏହି ଦିନଟିକୁ ଅନାଇ ରହିଥାଆନ୍ତି । ଭୋଗୀ, ମକର ଓ ପାଣ୍ଡୁ - ଏହି କ୍ରମରେ ସଂକ୍ରାନ୍ତିର ଉଭୟ ଦିନକୁ ମିଶାଇ ଦକ୍ଷିଣ-ଭାରତୀୟମାନେ ଏହି ଉତ୍ସବକୁ ତିନି ଦିନ ଧରି ପାଳନ କରିଥାଆନ୍ତି । ପ୍ରଥମ ଦିନ ଇନ୍ଦ୍ର, ଦ୍ୱିତୀୟ ଦିନ ସୂର୍ଯ୍ୟ ଓ ତୃତୀୟ ଦିନ ଗୋରୁଗାଈଙ୍କୁ ପୂଜା କରାଯାଇଥାଏ ।

ଓଡ଼ିଶାର ଭୌଗୋଳିକ ଅବସ୍ଥାନ ଉତ୍ତର ଓ ଦକ୍ଷିଣ ଭାରତର ମଧ୍ୟସ୍ଥଳରେ ହୋଇଥିବାରୁ ଏଠାରେ ମକର ସଂକ୍ରାନ୍ତିକୁ ସମାନ ପ୍ରାଧାନ୍ୟ ଦେଇ ପାଳନ କରିଥାଆନ୍ତି । ଓଡ଼ିଶାର ଧର୍ମଶାସ୍ତ୍ରମାନଙ୍କରେ ମଧ୍ୟ ଏହାର ପାଳନ ଉପରେ ଗୁରୁତ୍ୱ ଦିଆଯାଇଛି । ଅନ୍ୟାନ୍ୟ ସଂକ୍ରାନ୍ତିର ପାଳନରେ ଯେଉଁ ପୁଣ୍ୟ ହୁଏ, ତାହା ଅପେକ୍ଷା ଏଥିରୁ କୋଟିଏ ଗୁଣ ପୁଣ୍ୟ ହୁଏ ବୋଲି କୁହାଯାଇଛି ।

ଓଡ଼ିଶାର ଆଦିବାସୀ ଅଞ୍ଚଳରେ ମକର ସଂକ୍ରାନ୍ତିଟି ଖୁବ୍ ଜାକଜମକରେ ପାଳିତ ହୁଏ । ବିଶେଷ ଭାବରେ ମୟୂରଭଞ୍ଜ ଜିଲ୍ଲାର ସାନ୍ତାଳ ସମ୍ପ୍ରଦାୟର ଆଦିବାସୀମାନେ ଏହି ପର୍ବଟିକୁ ଖୁବ୍ ଆନନ୍ଦ ଉତ୍ସାହର ସହିତ ପାଳନ କରିଥାଆନ୍ତି । ଏହି ପର୍ବରେ ସେମାନେ ତିନି ଦିନ ପାଇଁ କୌଣସି କାମଧନ୍ଦା ନକରି ତାଙ୍କର ଦେବତାଙ୍କ ନିକଟରେ ପୂଜା ବାଡ଼ି ସ୍ତ୍ରୀପୁରୁଷ ଏକତ୍ର ମିଶି ଗୀତ ଗାଇ ମଉଛବ କରନ୍ତି । ଗୋଟିଏ କଦଳୀଗଛକୁ ପୂଜା କରି ସେମାନେ ସେଇ ଗଛକୁ ଲକ୍ଷ୍ୟ କରି ତୀର ମାରନ୍ତି । ଯାହାର ତୀର ଗଛର ନିର୍ଦ୍ଦିଷ୍ଟ ଲକ୍ଷ୍ୟସ୍ଥଳକୁ ବିଦ୍ଧ କରେ ସେହି ଲୋକଟିକୁ ସେମାନେ ନୂଆ ଲୁଗା ପିନ୍ଧାଇ, ପେଟପୂରା ଖୁଆଇ, ମୁଣ୍ଡରେ ବସାଇ, ବାଜା ବଜାଇ, ସାହି ସାହି ବୁଲାଇ ସମ୍ମାନିତ କରନ୍ତି ।

ଉତ୍ତର ଭାରତରେ ମଧ୍ୟ ମକର ସଂକ୍ରାନ୍ତିରେ ଧନୀ ଲୋକମାନେ ଅନ୍ନ ଓ ବସ୍ତ୍ର ସହ ରାଶିରେ ତିଆରି ହୋଇଥିବା କୋରା ଓ ମିଠେଇ ବାଣ୍ଟନ୍ତି । ମହାରାଷ୍ଟ୍ରରେ ରାଶି ତିଆରି ହାଲୁଆ ବଣ୍ଟାଯାଏ । ଗୟାରେ ଚୋପାଛଡ଼ା ରାଶିରେ ତିଆରି ସ୍ୱାଦିଷ୍ଟ ମିଠାଇ ପ୍ରସିଦ୍ଧ ଅଟେ । ସମଗ୍ର ଭାରତବର୍ଷରେ ଏହି ଉତ୍ସବଟି ମହାସମାରୋହରେ ପାଳିତ ହୋଇଥାଏ । ବିଭିନ୍ନ ତୀର୍ଥ ସ୍ଥାନରେ ବିଶେଷତଃ ଗଙ୍ଗାସାଗର-ସଙ୍ଗମରେ ବୁଡ଼ ପକାଇ ସକଳ ପାପକୁ ଦୂରକରି ନବ ଜୀବନଯାପନର ପ୍ରେରଣା ଏହି ମକର ସଂକ୍ରାନ୍ତିରେ ସୂର୍ଯ୍ୟଙ୍କ ଉତ୍ତରାୟଣରୁ ଲୋକେ ଲାଭ କରି ଥାଆନ୍ତି ।

ବ୍ରହ୍ମାଣ୍ଡ ପୁରାଣରେ ଦ୍ରୋଣାଚାର୍ଯ୍ୟଙ୍କ ପତ୍ନୀ କୃପୀ ସନ୍ତାନବତୀ ହେବା ପାଇଁ ଦୁର୍ବାସାଙ୍କୁ ପ୍ରସନ୍ନ କରି ଏହି ସମୟରେ 'ଦଧିମନ୍ଥନବ୍ରତ' ପାଳନ କରିଥିଲେ । ଏହି ବ୍ରତ ପାଳନ କରିବାକୁ ହେଲେ ପ୍ରଥମେ ଭୂମିକୁ ଲିପି ପୋଛି ପରିଷ୍କାର କରି ତା' ଉପରେ ଗୋଟିଏ ସ୍ୱସ୍ତିକ ଚିହ୍ନ ଆଙ୍କି ସେହି ଚିହ୍ନ ଉପରେ କିଛି ଗହମ ବା ଅକ୍ଷତ ରଖି ତା' ଉପରେ ଏକ ପୂର୍ଣ୍ଣ ଦଧିଭାଣ୍ଡ ରଖାଇବାକୁ ହୋଇଥାଏ । ମଧ୍ୟାହ୍ନ ପର୍ଯ୍ୟନ୍ତ ବ୍ରତଧାରୀ ପବିତ୍ର ମନରେ କୃଷ୍ଣଲୀଳା ପାଠ କଲା ପରେ ସେହି ଦଧିକୁ ମନ୍ଥନ କରିବେ ଏବଂ ସୁବର୍ଣ୍ଣ ନିର୍ମିତ କୃଷ୍ଣ ଓ ଯଶୋଦାଙ୍କ ପ୍ରତିମା ପୂଜା କରିବେ । ଦଧିଭାଣ୍ଡର ଚାରିପାଖରେ ସିନ୍ଦୂର ଓ କୁଙ୍କୁମ ଲଗାଇ ତାକୁ ଗୋଟିଏ ରେଶମ ବସ୍ତ୍ର ପିନ୍ଧାଇ ତା' ଦେହରେ ଗୋଟିଏ ସୁନ୍ଦର ଫୁଲହାର ପିନ୍ଧାଇ ପ୍ରଣାମ କରିବେ । ଦଧିଭାଣ୍ଡରେ ଦେବୀଙ୍କୁ ଓ ଦଧିମନ୍ଥନ ଦଣ୍ଡରେ ସୂର୍ଯ୍ୟଙ୍କୁ ଆବାହନ କରି ଆଠଦିଗରେ ଆଠଟି ଦୀପ ଜାଳି ଯଶୋଦାଙ୍କ କୋଳରେ ସ୍ତନ୍ୟପାନ କରୁଥିବା ବାଳକ କୃଷ୍ଣଙ୍କୁ ଧ୍ୟାନ କରି ପ୍ରାର୍ଥନା କରିବାକୁ ହେବ । ମକର ସଂକ୍ରାନ୍ତିରେ ଏହି ଦଧି ମନ୍ଥନ ବ୍ରତ କଲେ ନିଶ୍ଚିତ ଭାବରେ ସନ୍ତାନ ହୁଏ ବୋଲି ଲୋକ ବିଶ୍ୱାସ ରହିଛି । ଦୁର୍ବାସାଙ୍କ ଉପଦେଶରେ ଏହି ବ୍ରତ କରି ଦ୍ରୋଣପତ୍ନୀ କୃପୀ ପୁତ୍ର-ସନ୍ତାନ ଲାଭ କରିଥିଲେ ।

ମକର ସଂକ୍ରାନ୍ତିରେ ଏହି ଦଧି ମନ୍ଥନ ବ୍ରତ କଲେ ନିଶ୍ଚିତ ଭାବରେ ସନ୍ତାନ ହୁଏ ବୋଲି ଲୋକ ବିଶ୍ୱାସ ରହିଛି । ଦୁର୍ବାସାଙ୍କ ଉପଦେଶରେ ଏହି ବ୍ରତ କରି ଦ୍ରୋଣପତ୍ନୀ କୃପୀ ପୁତ୍ର-ସନ୍ତାନ ଲାଭ କରିଥିଲେ ।

ସୂର୍ଯ୍ୟ ଦକ୍ଷିଣ-ଗୋଲାର୍ଦ୍ଧରେ ମକରକ୍ରାନ୍ତିଠାରେ ଥିବାରୁ ଉତ୍ତରଗୋଲାର୍ଦ୍ଧରେ ଅବସ୍ଥିତ ଆମର ଭାରତବର୍ଷରେ ଶୀତଋତୁ । ତେଣୁ ଲୋକେ ଶୀତ ଭୟରେ କମ୍ବଳଘୋଡ଼ି ହୋଇ ଦୀର୍ଘରାତି କଟାଇ ସକଳ ପ୍ରାଣଶକ୍ତିର ଉତ୍ସ ସୂର୍ଯ୍ୟ ଦେବତାଙ୍କ କିରଣ ପାଇବା ଲାଗି ଆକୁଳ ହୋଇଥାଆନ୍ତି । ଦେବତାମାନଙ୍କୁ ମଧ୍ୟ ଶୀତ ହେଉଥିବ ଏବଂ ସେମାନଙ୍କ ଶୀତ ଗଲେ ଆମର ମଧ୍ୟ ଶୀତ ଯିବ ବୋଲି ମକର ସଂକ୍ରାନ୍ତିରେ ଦେବତାମାନଙ୍କ ନିକଟରେ ଘୃତକମ୍ବଳ-ଲାଗିର ବ୍ୟବସ୍ଥା ହୋଇଥାଏ । ଲିଙ୍ଗରାଜଙ୍କ ଚତୁର୍ଦ୍ଦଶ ଯାତ୍ରା ମଧ୍ୟରେ ମକର ସଂକ୍ରାନ୍ତିକୁ ପ୍ରଧାନ ଯାତ୍ରା ଭାବରେ ସ୍ୱୀକାର କରି କୁହାଯାଇଛି - 'ଦୃଷ୍ଟ୍ୱା ମକର ସଂକ୍ରାନ୍ତ୍ୟାଂ ଲିଙ୍ଗଂ ତ୍ରିଭୁବନେଶ୍ୱରମ୍, ଘୃତ କମ୍ବଳ ସଂଯୁକ୍ତ ମଗ୍ନିଲୋକମବାପ୍ନୁୟାତ୍ ।'

୧୩୮୨/୨୩୯୫
ଶ୍ରୀବିଦ୍ୟା, ପୋ: ଖଣ୍ଡଗିରି
ଭୁବନେଶ୍ୱର-୭୫୧୦୩୦

# ଓଡ଼ିଶାରେ ଖଦି ଓ ଗ୍ରାମ୍ୟଶିଳ୍ପର ନୂତନ ଦିଗନ୍ତ

ମନମୋହନ ରଥ

ଗାନ୍ଧିଜୀ କହୁଥିଲେ, ଭାରତବର୍ଷର ଗ୍ରାମାଞ୍ଚଳରେ ରହୁଥିବା ଲୋକମାନଙ୍କର ଅର୍ଥନୈତିକ ଓ ସାମାଜିକ ବିକାଶ ଘଟିଲେ ହିଁ ପ୍ରକୃତ ରାମରାଜ୍ୟ ଆସିପାରିବ । ରାମରାଜ୍ୟ କହିଲେ ସେ ବୁଝୁଥିଲେ ଖାଦ୍ୟ ବସ୍ତ୍ରରେ ସ୍ୱୟଂ ସଂପନ୍ନତା ଏବଂ ବିଷମତାବିହୀନ ସର୍ବୋଦୟ । ଏଥିପାଇଁ ସେ ଖଦି ଓ ଗ୍ରାମୋଦ୍ୟୋଗକୁ ମୌଳିକ ମାଧ୍ୟମ ଭାବରେ ବାଛିଥିଲେ । ସ୍ୱାଧୀନତା ପରେ ଗାନ୍ଧୀବାଦୀ ଅର୍ଥନୈତିକ ଆଦର୍ଶର ସଫଳ ରୂପାୟନ ପାଇଁ ଭାରତ ସରକାର ୧୯୫୩ ମସିହାରେ ବିଧିବଦ୍ଧ ଭାବରେ ଅଖିଳ ଭାରତ ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼ ଗଠନ କରିଥିଲେ । ଗ୍ରାମୀଣ ବିକାଶ ପାଇଁ ଖଦି ଓ ଗ୍ରାମୋଦ୍ୟୋଗକୁ ରାଷ୍ଟ୍ରୀୟ ସାଧନ ଭାବରେ ଗ୍ରହଣ କରାଗଲା । ଏହା ମାଧ୍ୟମରେ ଗ୍ରାମାଞ୍ଚଳରେ ରହୁଥିବା ପାରମ୍ପରିକ କାରିଗର, ଆଦିବାସୀ, ହରିଜନ, ପଛୁଆବର୍ଗ ଓ ବିଶେଷତଃ ମହିଳାମାନଙ୍କ ପାଇଁ ଫଳପ୍ରଦ ଆତ୍ମନିୟୋଜନର ସୁଯୋଗ ସୃଷ୍ଟି କରାଯାଇପାରିବ ବୋଲି ବିବେଚନା କରାଗଲା । ରାଜ୍ୟସ୍ତରରେ ଖଦି ଓ ଗ୍ରାମ୍ୟଶିଳ୍ପ କାର୍ଯ୍ୟକ୍ରମଗୁଡ଼ିକ କାର୍ଯ୍ୟକାରୀ କରିବା ନିମନ୍ତେ ରାଜ୍ୟ ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼ମାନ ପ୍ରତିଷ୍ଠା କରାଗଲା । ପରବର୍ତ୍ତୀ କାଳରେ ପରିଚାଳନାଗତ ତ୍ରୁଟି ପରିଲକ୍ଷିତ ହେବାରୁ ୧୯୫୭ ମସିହାରେ ପାର୍ଲାମେଣ୍ଟରେ ଗୃହୀତ ବିଧେୟକ ବଳରେ ଅଖିଳ ଭାରତ ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼କୁ 'ଖଦି ଓ ଗ୍ରାମୋଦ୍ୟୋଗ କମିଶନ' ଭାବରେ ରୂପାନ୍ତରିତ କରାଗଲା ।



ଭାରତ ସରକାର ସାରା ଦେଶରେ ଖଦି ଓ ଗ୍ରାମ ଶିଳ୍ପର ପ୍ରସାର ପାଇଁ ଖଦି ଓ ଗ୍ରାମୋଦ୍ୟୋଗ କମିଶନଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରିଛନ୍ତି । କମିଶନ ରାଜ୍ୟ ଖଦି ବୋର୍ଡ଼ଗୁଡ଼ିକ ଜରିଆରେ ଏହି ଦାୟିତ୍ୱ ନିଷ୍ପାଦନ କରିଆସୁଛନ୍ତି । ଏଥିପାଇଁ ଆବଶ୍ୟକ ପାଣ୍ଠି ଓ ମାର୍ଗଦର୍ଶନ ରାଜ୍ୟ ବୋର୍ଡ଼ମାନଙ୍କୁ କମିଶନ ହିଁ ଯୋଗାଇ ଦିଅନ୍ତି । ଉଲ୍ଲେଖନୀୟ ଯେ ପ୍ରତ୍ୟେକ ରାଜ୍ୟ କେନ୍ଦ୍ରଶାସିତ ଅଞ୍ଚଳରେ ଖଦି କମିଶନଙ୍କର ନିଜର ରାଜ୍ୟ କାର୍ଯ୍ୟାଳୟ ରହିଛି ।

୧୯୯୫-୯୬ ବର୍ଷ ପର୍ଯ୍ୟନ୍ତ ଖଦି କମିଶନ ନିଜସ୍ୱ 'ପାଟର୍ଣ୍ଣ ଅଫ୍ ଆସିଷ୍ଟାଣ୍ଟ' ଅନୁଯାୟୀ 'ପାଟର୍ଣ୍ଣ ଆପ୍ରୋଚ୍ ପଦ୍ଧତିରେ ଖଦି ଓ ଗ୍ରାମୋଦ୍ୟୋଗ ପାଇଁ ଆର୍ଥିକ ସହାୟତା ଯୋଗାଇ ଦେଉଥିଲେ । ମୁଖ୍ୟତଃ ୨୪ ପ୍ରକାର - ପ୍ରାସଙ୍ଗିକତା ଗ୍ରାମ୍ୟ ଶିଳ୍ପ ଓ ଖଦି ପାଇଁ ଏହି ସହାୟତା ମିଳୁଥିଲା । କମିଶନଙ୍କଦ୍ୱାରା ପ୍ରବର୍ତ୍ତିତ ବିଧି ଅନୁଯାୟୀ ବ୍ୟକ୍ତିବିଶେଷ ହିତାଧିକାରୀଙ୍କୁ ସିଧାସଳଖ ସହାୟତା ଦିଆନଯାଇ ସମବାୟ ସମିତି ବା ଅନୁଷ୍ଠାନ ଜରିଆରେ ଋଣ ଓ ଅନୁଦାନ ଆକାରରେ ଏହା ଯୋଗାଇ ଦିଆଯାଉଥିଲା । ଆର୍ଥିକ ସହାୟତା ବ୍ୟତୀତ ବୋର୍ଡ଼ ପକ୍ଷରୁ ହିତାଧିକାରୀମାନଙ୍କୁ ବୈଷୟିକ ମାର୍ଗଦର୍ଶନ ଓ ଭିତ୍ତିଭୂମିଗତ ସହାୟତା ମଧ୍ୟ ଯୋଗାଇ ଦିଆଯାଉଥିଲା । ଉନ୍ନତମାନର ଗ୍ରାମ୍ୟଶିଳ୍ପଜାତ ସାମଗ୍ରୀ ଉତ୍ପାଦନ ପାଇଁ ବୋର୍ଡ଼ କାର୍ଯ୍ୟାଳୟ ପରିସର ତଥା ଉଦ୍ୟୋଗପୁରୀଠାରେ ୭ ଗୋଟି ଆଦର୍ଶ ବିଭାଗୀୟ ଏକକ ମଧ୍ୟ ପ୍ରତିଷ୍ଠା କରାଯାଇଥିଲା । ଏହି ବିଭାଗୀୟ ଏକକଗୁଡ଼ିକରେ ତନ୍ତ, ଆଖୁଖାଇ, ହାତ ତିଆରି କାଗଜ, ସାବୁନ, ଚିକଣ ମୃତ୍ତିକାରୁ ପ୍ରସ୍ତୁତ ସାମଗ୍ରୀମାନ ଘଣା ତେଲ, ଅଗରବତୀ, ଦିଆସିଲି ତଥା ମହୁବାକ୍ସ ଇତ୍ୟାଦି ଉତ୍ପାଦନ ହେଉଥିଲା ଓ ଏଠାରେ ଗ୍ରାମୀଣ ହିତାଧିକାରୀମାନଙ୍କୁ ପ୍ରଶିକ୍ଷଣ ମଧ୍ୟ ଦିଆଯାଉଥିଲା ।

୧୯୯୫-୯୬ ବର୍ଷଠାରୁ ଖଦି କମିଶନଙ୍କ ସହାୟତା ପ୍ରଦାନ ପଦ୍ଧତିରେ କେତେକ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ କରାଗଲା । ଦେଶରେ କ୍ରମବର୍ଦ୍ଧିଷ୍ଣୁ ବେକାରୀ ସମସ୍ୟାକୁ ଦୃଷ୍ଟିରେ ରଖି ପାରମ୍ପରିକ ବୃତ୍ତିଗତ କୌଳିକ କାରିଗରଙ୍କ ସହିତ ଗ୍ରାମାଞ୍ଚଳର ଶିକ୍ଷିତ ବେକାରମାନଙ୍କୁ

ଆତ୍ମ ନିୟୋଜନର ସୁଯୋଗ ଯୋଗାଇ ଦେବା ପାଇଁ ଗ୍ରାମ୍ୟ ଶିଳ୍ପ ସହାୟତା ପ୍ରଦାନର ପରିସରକୁ ବୃଦ୍ଧି କରାଯାଇ ୨୪ ବଦଳରେ ୯୯ଟି ବିଭିନ୍ନ ପ୍ରକାର ଉଦ୍ୟୋଗକୁ ଏଥିରେ ଅନ୍ତର୍ଭୁକ୍ତ କରାଗଲା । ହିତାଧିକାରୀଙ୍କ କ୍ଷମତା ଓ ଆବଶ୍ୟକତା ଅନୁଯାୟୀ ସେମାନଙ୍କଦ୍ୱାରା ପ୍ରସ୍ତୁତ ପ୍ରକଳ୍ପ ଭିତ୍ତିରେ ସହାୟତା ପ୍ରଦାନ କରାଯିବାକୁ ନିଷ୍ପତ୍ତି ନିଆଗଲା । କେନ୍ଦ୍ର ସରକାରଙ୍କ ଦ୍ୱାରା ପ୍ରବର୍ତ୍ତିତ ନୂତନ ନୀତି ଅନୁସାରେ ଖଦି ଓ ଗ୍ରାମୋଦ୍ୟୋଗ କମିଶନଙ୍କ ସହାୟତା କାର୍ଯ୍ୟକ୍ରମରେ ବ୍ୟାଙ୍କଗୁଡ଼ିକ ପକ୍ଷଭୁକ୍ତ କରାଯାଇ କନ୍‌ସୋର୍ସିଅମ କ୍ରେଡ଼ିଟ୍ ଫଣ୍ଡ ଗଠନ କରାଗଲା ଓ ଏଥିରୁ ହିତାଧିକାରୀମାନଙ୍କୁ ଗ୍ରାମ୍ୟଶିଳ୍ପରେ ପ୍ରକଳ୍ପ ଭିତ୍ତିକ ସହାୟତା ପ୍ରଦାନ କରାଗଲା । ଏହାକୁ ସି.ବି.ସି. ସହାୟତା କୁହାଯାଉଥିଲା । ଏଥିରେ ରାଜ୍ୟ ଖଦି ବୋର୍ଡ଼ତରଫରୁ ୩୫୮ ଜଣ ହିତାଧିକାରୀଙ୍କୁ ରଣ ଯୋଗାଇ ଦିଆଯାଇଛି । ଏହି ପଦ୍ଧତି ୧୯୯୯-୨୦୦୦ ପର୍ଯ୍ୟନ୍ତ ବଳବତ୍ତର ଥିଲା ।

୧୯୯୯-୨୦୦୦ ବର୍ଷ ଠାରୁ ଖଦି କମିଶନ ଗ୍ରାମୋଦ୍ୟୋଗ ରୋଜଗାର ଯୋଜନା ପ୍ରବର୍ତ୍ତନ କଲେ । ତିନୋଟି ପର୍ଯ୍ୟାୟରେ ସହାୟତା ପ୍ରଦାନ ପଦ୍ଧତିର ପରିବର୍ତ୍ତନ କରାଯାଇଥିଲେ ମଧ୍ୟ ସରକାରଙ୍କ ମୂଳନୀତି ଅପରିବର୍ତ୍ତିତ ରହିଛି । ତାହା ହେଲା, ଖଦି କମିଶନଙ୍କଦ୍ୱାରା ରାଜ୍ୟଗୁଡ଼ିକରେ ଙ୍କଦି ଓ ଗ୍ରାମ୍ୟ ଶିଳ୍ପର ପ୍ରତିଷ୍ଠା ଓ ପ୍ରସାର ପାଇଁ ଆବଶ୍ୟକ ପାଣ୍ଠି ଆବଣ୍ଟନ କରିବା ତଥା କାର୍ଯ୍ୟକ୍ରମ ରୂପାୟନ ନିମନ୍ତେ ମାର୍ଗ ଦର୍ଶନ ପ୍ରସ୍ତୁତ କରିବା ।

ଆମ ରାଜ୍ୟରେ ଖଦି ଓ ଗ୍ରାମୋଦ୍ୟୋଗର ପ୍ରତିଷ୍ଠା ଓ ପ୍ରସାର ପାଇଁ ୧୯୫୬ ମସିହା ଜୁନ୍ ୧୫ ତାରିଖରେ ଓଡ଼ିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼ ଗଠିତ ହେଲା । ଗୌରବର କଥା ଯେ ପ୍ରଥମ ଉପଦେଷ୍ଟା ବୋର୍ଡ଼ର ଅଧ୍ୟକ୍ଷ ଥିଲେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ।

ବୋର୍ଡ଼ ଗଠନ ହେବା ଦିନଠାରୁ ୧୯୯୫-୯୬ ବର୍ଷ ପର୍ଯ୍ୟନ୍ତ ରାଜ୍ୟରେ ଖଦି ଓ ଗ୍ରାମ୍ୟଶିଳ୍ପର ବିକାଶ ପାଇଁ ମୋଟ ୫୧ କୋଟି ୭୧ ଲକ୍ଷ ୪୪ ହଜାର ୨୨୭ ଟଙ୍କା କମିଶନଙ୍କଠାରୁ ମିଳିଛି । ସେସବୁ ରାଶିକୁ ରାଜ୍ୟରେ ମୋଟ ୧୮୬୫ ଗୋଟି ସମବାୟ ସମିତି ଓ ଅନୁଷ୍ଠାନ ଜରିଆରେ ଲକ୍ଷାଧିକ ହିତାଧିକାରୀଙ୍କୁ ପ୍ରଦାନ କରାଯାଉଛି । ସେହିପରି ସି.ବି.ସି. ପାଣ୍ଠି ସହାୟତା ଆକାରରେ ୧୯୯୬-୯୭ଠାରୁ ୪ ବର୍ଷରେ କେବଳ ଗ୍ରାମ୍ୟ ଶିଳ୍ପ ପାଇଁ ୩୫୮ ଜଣ ବ୍ୟକ୍ତିବିଶେଷଙ୍କୁ ୭ କୋଟି ଟଙ୍କା ପ୍ରଦାନ କରାଯାଇଛି । ୧୯୯୯-୨୦୦୦ ବର୍ଷଠାରୁ ଅଦ୍ୟାବଧି ଗ୍ରାମୋଦ୍ୟୋଗ ରୋଜଗାର ଯୋଜନାରେ ଖଦି କମିଶନଙ୍କଠାରୁ ୨୫ କୋଟି ୯୦ ଲକ୍ଷ ୪୯ ହଜାର ୬୬୪ ଟଙ୍କା ମାର୍ଜିନ ରାଶି ସହାୟତା ମିଳିଛି ଓ ଏହାକୁ ୨୦୦୭ ଡିସେମ୍ବର ଶେଷ ସୁଦ୍ଧା ୩ ହଜାର ୩୮ ଜଣ ଗ୍ରାମୋଦ୍ୟୋଗ ହିତାଧିକାରୀଙ୍କୁ ଯୋଗାଇ ଦିଆଯାଇଥିବା ମୋଟ ୭୧ କୋଟି ୯୪ ଲକ୍ଷ ୮୭ ହଜାର ଟଙ୍କାର ପ୍ରକଳ୍ପ ରଣ ରାଶି ଉପରେ ରିହାତି ସହାୟତା ଆକାରରେ ଦିଆଯାଇଛି ।

ଅନ୍ୟ ରାଜ୍ୟ ତୁଳନାରେ ଓଡ଼ିଶା ପାଇଁ ଖଦି କମିଶନଙ୍କଠାରୁ ଉପଲବ୍ଧ ସହାୟତା ରାଶି ଅତ୍ୟନ୍ତ ନଗଣ୍ୟ । ରାଜ୍ୟର ମୁଣ୍ଡପିଛା ସଞ୍ଚିତ ରାଶି ଦେଶର ମୁଣ୍ଡପିଛା ରାଶି ତୁଳନାରେ କମ୍ ହୋଇଥିବାରୁ ଆନୁପାତିକ ହାରରେ ଓଡ଼ିଶା କମ୍ ପାଇଛି ବୋଲି କୁହାଯାଉଛି । ଆମ ରାଜ୍ୟ ପାଇଁ ଏହା ବିଡ଼ମ୍ବନା ବୋଲି ସାବ୍ୟସ୍ତ ହୋଇଛି ।

ସଂପ୍ରତି ରାଜ୍ୟରେ ଖଦିର ଉପର୍ଯ୍ୟୁପରି ବିକାଶ ପାଇଁ ରାଜ୍ୟ ସରକାର ଗୁରୁତ୍ୱ ଆରୋପ କରୁଛନ୍ତି । ଖଦି ଅନୁଷ୍ଠାନଗୁଡ଼ିକର ପୁନରୁଦ୍ଧାର ଦିଗରେ ପଦକ୍ଷେପ ନିଆଯିବାକୁ ଚିନ୍ତା କରାଯାଉଛି । ମାନ୍ୟବର ମୁଖ୍ୟମନ୍ତ୍ରୀ ଓ ମାନ୍ୟବର ଶିଳ୍ପ ମନ୍ତ୍ରୀ ଏ ଦିଗରେ ସକାରାତ୍ମକ ଆଗ୍ରହ ପ୍ରକାଶ କରିଛନ୍ତି । ରାଜ୍ୟର ମୁଖ୍ୟ ସଚିବ ଖଦି ଓ ଗ୍ରାମ୍ୟ ଶିଳ୍ପକୁ ଲୋକପ୍ରିୟ କରାଯିବା ଦିଗରେ ଫଳପ୍ରଦ ପଦକ୍ଷେପ ନେବାକୁ ନିର୍ଦ୍ଦେଶ ଦେଇଛନ୍ତି ।

ଆମ ରାଜ୍ୟରେ ଖଦି ଓ ଗ୍ରାମୋଦ୍ୟୋଗର ପ୍ରତିଷ୍ଠା ଓ ପ୍ରସାର ପାଇଁ ୧୯୫୬ ମସିହା ଜୁନ୍ ୧୫ ତାରିଖରେ ଓଡ଼ିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼ ଗଠିତ ହେଲା । ଗୌରବର କଥା ଯେ ପ୍ରଥମ ଉପଦେଷ୍ଟା ବୋର୍ଡ଼ର ଅଧ୍ୟକ୍ଷ ଥିଲେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ।

ଉଲ୍ଲେଖନୀୟ ଯେ ଖଦି କମିଶନ ଖଦିର ପ୍ରତିଷ୍ଠା ଓ ପ୍ରସାର ପାଇଁ ୧୯୫୭ ମସିହାରୁ ୧୯୯୬ ମସିହା ପର୍ଯ୍ୟନ୍ତ ୪୦ ବର୍ଷ ମଧ୍ୟରେ ୪୦ଟି ଖଦି ଅନୁଷ୍ଠାନ ପାଇଁ ମାତ୍ର ୧ କୋଟି ୩ ଲକ୍ଷ ୩୮ ହଜାର ଟଙ୍କା ଯୋଗାଇ ଦେଇଛନ୍ତି । ଏଥିରୁ ୬ଟି ଅନୁଷ୍ଠାନକୁ ପାଟ ଓ ମଠା ପାଇଁ ୫୬ ଲକ୍ଷ ଟଙ୍କା ଦିଆଯାଇଛି, ଅର୍ଥାତ୍ ପ୍ରକୃତ ଖଦି ବା ସାଧାରଣ ଲୋକଙ୍କ ଖଦି କୁହାଯାଉଥିବା କାର୍ପାସ ଖଦି ପାଇଁ ୩୪ଟି ଅନଦୁଷ୍ଠାନକୁ ୪୦ ବର୍ଷରେ ମିଳିଛି ମାତ୍ର ୪୭ ଲକ୍ଷ ଟଙ୍କା । ପୁଣି ୧୯୯୫-୯୬ ପରଠାରୁ ରାଜ୍ୟରେ ବୋର୍ଡ଼ ଜରିଆରେ ଖଦିର ପ୍ରସାର ପାଇଁ କିଛି ହେଲେ ସହାୟତା ଯୋଗାଇ ଦିଆଯାଇନାହିଁ ।

ଏବେ ଖଦି ପ୍ରତି ରାଜ୍ୟ ସରକାରଙ୍କ ଆଗ୍ରହ ଏହି ପୁରାତନ ଶିଳ୍ପର ପୁନରଭ୍ୟୁଦୟର ବାଟ ଖୋଲି ଦେବ । କପାରୁ ସୂତା ଓ ସେହି ସୂତାରୁ ଲୁଗା ବୁଣିବା ହେଉଛି ଖଦି ପଛରେ ଥିବା ମୂଳତତ୍ତ୍ୱ । ଏହାଦ୍ୱାରା କୃଷକ, ବୁଣାକାର ଓ କୃଷି ଉପରେ ନିର୍ଭର କରୁଥିବା ଶ୍ରମଜୀବୀମାନଙ୍କର ଆର୍ଥିକ ଅବସ୍ଥାରେ ଉନ୍ନତି ଅଣାଯାଇପାରିବ ବୋଲି ଗାନ୍ଧିଜୀ ବିଚାର କରୁଥିଲେ । ଏକଦା ଓଡ଼ିଶାର ୨୬ ହଜାର ମହିଳା ସୂତାକାଟିବା କାମରେ ନିୟୋଜିତ ଥିଲେ । ସେତେବେଳେ ଆମ ରାଜ୍ୟରେ କପାଚାଷ

ହେଉ ନଥିଲା । ବାହାର ରାଜ୍ୟରୁ କପା ଅଣାଯାଇ ସେଥିରୁ ସୂତାକଟା ହେଉଥିଲା । ମାତ୍ର ଏବେ ସରକାରଙ୍କ ଦୃଷ୍ଟିକୋଣ ବଦଳିଛି । କୃଷି ବିଭାଗ ପକ୍ଷରୁ କପାଚାଷ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଛି । ରାୟଗଡ଼ା, କଳାହାଣ୍ଡି ଓ ବଲାଙ୍ଗିର ଜିଲ୍ଲାର ୧୫୦ ହଜାର ଏକର ଜମିରେ କପା ଚାଷ କରାଯାଉଛି । ଖଦି ପାଇଁ ଏହା ଏକ ଶୁଭ ସୂଚନା ରାଜ୍ୟର ୪ ଲକ୍ଷ ବୁଣାକାର ଏଥିରେ ଉପକୃତ ହୋଇପାରିବେ । ଏଥିରୁ ସେମାନଙ୍କୁ ଆତ୍ମନିଯୁକ୍ତିର ସୁଯୋଗ ମିଳିପାରିବ । ଏବେ ସରକାରଙ୍କୁ ଦେଖିବାକୁ ହେବ, ଯେପରି ରାଜ୍ୟରେ ଉତ୍ପନ୍ନ ସମସ୍ତ କପା, ସୂତା କାଟିବା ପାଇଁ ଉପଲବ୍ଧ ହୋଇପାରିବ । ସେହିସବୁ ଅଞ୍ଚଳରେ ଏବେ ଦେଖାଦେଇଥିବା ଦାଦନ ସମସ୍ୟାର ସମାଧାନ ଦିଗରେ ଖଦି ଏକ ଫଳପ୍ରଦ ସାଧନ ହୋଇପାରିବ ।

ଏବେ ଓଡ଼ିଶାର ୧୫୦ ହଜାର ଏକକରରୁ ଉର୍ଦ୍ଧ୍ୱ ଜମିରେ କପାଚାଷ କରାଯାଉଥିବା ଦୃଷ୍ଟିରୁ ରାଜ୍ୟରେ ଖଦିର ପୁନରଭ୍ୟୁଦୟ ପାଇଁ ସରକାରଙ୍କ ପକ୍ଷରୁ ତତ୍ପରତା ପ୍ରକାଶ ପାଇଛି । ଏହାଫଳରେ ଆଗାମୀ ଦିନରେ କେବଳ କେବିକେ ଅଞ୍ଚଳରେ ୧୫ ହଜାର ମହିଳାଙ୍କୁ କାମ ମିଳିପାରିବ ।

ରାଜ୍ୟ ସରକାର ଖଦି ଉପରେ ଅଧିକ ପ୍ରାଥମିକତା ହେଉଥିବା ଦୃଷ୍ଟିରୁ ଖଦି କମିଶନ ଅବଶ୍ୟ ଏଥିପ୍ରତି ଧ୍ୟାନ ଦେବେ । ଖଦିକୁ ସୁନ୍ଦର, ଶୋଭନ ଓ ଶ୍ରେୟ କରିବା ଦିଗରେ ରାଜ୍ୟ ବୋର୍ଡ଼ ପକ୍ଷରୁ କାର୍ଯ୍ୟକ୍ରମ ହାତକୁ ନିଆଯାଉଛି । ଖଦି କମିଶନଙ୍କ ସକ୍ରିୟ ସହଯୋଗରେ ଏହାକୁ ସଫଳ କରାଯିବ ।

ଓଡ଼ିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼ ଗଠନ ହେବା ଦିନଠାରୁ ୧୯୯୫-୯୬ ବର୍ଷ ପର୍ଯ୍ୟନ୍ତ ୪୦ ବର୍ଷରେ ଗ୍ରାମ୍ୟ ଶିଳ୍ପ ଓ ଖଦି ପାଇଁ ମୋଟ ୫୧ କୋଟି ୭୧ ଲକ୍ଷ ଟଙ୍କା ବିନିଯୋଗ ହୋଇଥିବା ବେଳେ ବିଗତ ୭ ବର୍ଷରେ କେବଳ ଗ୍ରାମ୍ୟଶିଳ୍ପରେ ୭୧ କୋଟ ୯୪ ଲକ୍ଷ ୮୭ ହଜାର ଟଙ୍କା ବିନିଯୋଗ ହୋଇଛି । ଓ ପ୍ରାୟ ୧୨ ହଜାର ଲୋକ ପ୍ରତ୍ୟକ୍ଷ ଓ ପରୋକ୍ଷ ଆତ୍ମନିଯୁକ୍ତିର ସୁଯୋଗ ପାଇଛନ୍ତି ।

ଏବେ ଓଡ଼ିଶାର ୧୫୦ ହଜାର ଏକକରରୁ ଉର୍ଦ୍ଧ୍ୱ ଜମିରେ କପାଚାଷ କରାଯାଉଥିବା ଦୃଷ୍ଟିରୁ ରାଜ୍ୟରେ ଖଦିର ପୁନରଭ୍ୟୁଦୟ ପାଇଁ ସରକାରଙ୍କ ପକ୍ଷରୁ ତତ୍ପରତା ପ୍ରକାଶ ପାଇଛି । ଏହାଫଳରେ ଆଗାମୀ ଦିନରେ କେବଳ କେବିକେ ଅଞ୍ଚଳରେ ୧୫ ହଜାର ମହିଳାଙ୍କୁ କାମ ମିଳିପାରିବ ।

ସଚିବ
ଓଡ଼ିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼, ଭୁବନେଶ୍ୱର

---

# ମାସକ ମଧ୍ୟରେ କେନ୍ଦ୍ରାପଡ଼ା ଷ୍ଟାଡ଼ିୟମ ନିର୍ମାଣ ଶେଷ ହେବ : କ୍ରୀଡ଼ା ମନ୍ତ୍ରୀ

କେନ୍ଦ୍ରାପଡ଼ା ଜିଲ୍ଲାରେ ନିର୍ମାଣାଧୀନ ଥିବା ବିଭିନ୍ନ ପ୍ରକଳ୍ପର ଅଗ୍ରଗତି ସଂପର୍କରେ ଗତ ଜାନୁଆରୀ ୧୦ ତାରିଖ ସନ୍ଧ୍ୟାରେ ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ସମୀକ୍ଷା କରିଥିଲେ ।

କେନ୍ଦ୍ରାପଡ଼ା ଜିଲ୍ଲା ସଦର ମହକୁମାରେ ନିର୍ମାଣାଧୀନ ଥିବା ଜିଲ୍ଲାପାଳଙ୍କ ଅଫିସ୍ ବିଲ୍ଡ଼ିଂ ଓ ଷ୍ଟାଡ଼ିୟମର ନିର୍ମାଣ କାର୍ଯ୍ୟ ମାସକ ମଧ୍ୟରେ ଶେଷ କରିବାକୁ ରାଷ୍ଟ୍ରମନ୍ତ୍ରୀ ସଂପୃକ୍ତ ଅଧିକାରୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଇନ୍ଦୁପୁରଠାରେ ଅର୍ଦ୍ଧନିର୍ମିତ ଅବସ୍ଥାରେ ଥିବା ବହୁ ପ୍ରତୀକ୍ଷିତ ବିରୂପା ସେତୁ ସଂପର୍କରେ ସେ ମଧ୍ୟ ସମୀକ୍ଷା କରିଥିଲେ । ଏହି ସେତୁ ନିର୍ମାଣ କ୍ଷେତ୍ରରେ ଥିବା ସମସ୍ତ ପ୍ରତିବନ୍ଧକ ଦୂରୀଭୂତ ହୋଇଛି ଓ ଆବଶ୍ୟକ ଅର୍ଥ ମଧ୍ୟ ମଂଜୁର ହୋଇଥିବା ସୂଚନା ଦେଇ ସେତୁର ନିର୍ମାଣ କାର୍ଯ୍ୟ ଦ୍ରୁତଗତିରେ ଆଗେଇ ଚାଲିଥିବା ନିର୍ବାହୀଯନ୍ତ୍ରୀ ମନ୍ତ୍ରୀଙ୍କୁ ଅବଗତ କରାଇଥିଲେ ।

ସେହିପରି କେନ୍ଦ୍ରାପଡ଼ାଠାରେ ସଂସ୍କୃତି ଭବନ ନିର୍ମାଣ ଲାଗି ରାଜ୍ୟ ସରକାର ୨୦ ଲକ୍ଷ ଟଙ୍କାର ଅନୁଦାନ ଦେଇଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ଜମି ଚିହ୍ନଟ ହୋଇପାରି ନଥିବାରୁ ସେଥିନେଇ ଅଗ୍ରଗତି ଘଟିନଥିବା ସମୀକ୍ଷାରୁ ଜଣାପଡ଼ିଛି । ଆସନ୍ତା ମାସ ସୁଦ୍ଧା ଜମି ଚିହ୍ନଟ କରି ନିର୍ମାଣ କାର୍ଯ୍ୟ ଆରମ୍ଭ କରିବାକୁ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ନାୟକ ନିର୍ଦ୍ଦେଶ ଦେଇଥିଲେ ।

# ପରିବେଶ ସୁରକ୍ଷାରେ ପ୍ରାଣୀମାନଙ୍କ ଭୂମିକା

ବସନ୍ତ କୁମାର ଦାସ

ପରିବେଶ ଓ ପ୍ରାଣୀ ଠିକ୍ ଏକ ମୁଦ୍ରାର ଦୁଇପାର୍ଶ୍ୱ ସଦୃଶ । ଗୋଟିକୁ ଛାଡ଼ିଦେଲେ ଅନ୍ୟଟିର କୌଣସି ସ୍ଥିତି ନାହିଁ । ଆମର ଜୀବନଧାରା, ସଂସ୍କୃତି ଓ ଚାଲିଚଳନ ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ପ୍ରାଣୀଗୁଡ଼ିକର ଅନେକ ପ୍ରଭାବ ରହିଛି । ଗଧିଆ, ହେଟା, ଶିଆଳ ପ୍ରଭୃତି ପ୍ରାଣୀ ଜଙ୍ଗଲର ପଚାସଡ଼ା ଜୀବଜନ୍ତୁ ତଥା ଫୁଲଫଳ ଖାଇ ସଫା କରିଦିଅନ୍ତି । ସେଥିପାଇଁ ଏମାନଙ୍କୁ ପରିବେଶର ମେହେନ୍ତର ବା ଝାଡୁଦାର କହନ୍ତି । ପ୍ରତିବର୍ଷ ପୃଥିବୀରୁ ଏକାଧିକ ପ୍ରାଣୀ ସବୁଦିନ ପାଇଁ ବିଦାୟ ନେଇ ଯାଉଛନ୍ତି । ଏହା ସମଗ୍ର ମାନବ ସମାଜ ତଥା ପରିବେଶବିତ୍‌ମାନଙ୍କ ନିମନ୍ତେ ଗଭୀର କ୍ଷୋଭର ବିଷୟ । ଭାରତ ସ୍ୱାଧୀନତା ପାଇବାପରେ ଆମ ଦେଶରେ ପ୍ରାୟ ୪୦,୦୦୦ ବାଘ ଥିବା ଗଣନା କରାଯାଇଥିଲା । କିନ୍ତୁ ୧୯୭୨ ମସିହାରେ ଯେତେବେଳେ ବନ୍ୟ ପ୍ରାଣୀ ସୁରକ୍ଷା ଆଇନ ପ୍ରଣୟନ କରାଗଲା, ସେତେବେଳକୁ ଆମ ଦେଶରେ ପ୍ରାୟ ୧୮୨୭ଟି ବାଘ ଥିବା ଜଣାଗଲା । ଏଣୁ ପରବର୍ତ୍ତୀ ସମୟରେ ବ୍ୟାଘ୍ର ପ୍ରକଳ୍ପ ଜରିଆରେ ବର୍ତ୍ତମାନ ଏହି ପ୍ରାଣୀଙ୍କ ସଂଖ୍ୟା ପ୍ରାୟ ୪,୦୦୦ରୁ ଊର୍ଦ୍ଧ୍ୱକୁ ବୃଦ୍ଧି କରାଯାଇଛି । ଦେଶରେ ଥିବା ୨୭ଟି ବ୍ୟାଘ୍ର ସଂରକ୍ଷଣ କେନ୍ଦ୍ରରେ ଏମାନଙ୍କୁ ରଖାଯାଇଛି । କିନ୍ତୁ ରାଜସ୍ଥାନର ସରିସ୍କା ବ୍ୟାଘ୍ର ସଂରକ୍ଷଣ କେନ୍ଦ୍ର ପ୍ରାୟ ୨୨ଟି ବାଘ ଥିବାବେଳେ ୨୦୦୫ ମସିହା ଜାନୁଆରୀ ମାସ ସୁଦ୍ଧା ଗୋଟିଏ ହେଲେ ବାଘ ନଥିବା ଘୋର ଉଦ୍‌ବେଗର ବିଷୟ । ପ୍ରଧାନମନ୍ତ୍ରୀଙ୍କ ବ୍ୟାଘ୍ର ଟାସ୍କ ଫୋର୍ସର ମୁଖ୍ୟ ଶ୍ରୀଯୁକ୍ତ ବାଲ୍ମିକୀ ଥାପରର କୁହନ୍ତି ଯେ, 'ପରିବେଶ ସୁରକ୍ଷିତ ନ ରହିବା ଯୋଗୁଁ ବ୍ୟାଘ୍ର ସଂରକ୍ଷଣ କେନ୍ଦ୍ର ଅଛି ଓ ପ୍ରତିବର୍ଷ ଏମାନଙ୍କୁ ଗଣନା କରାଯାଇ କଡ଼ା ନଜର ରଖାଯାଇଛି । ରାଜସ୍ଥାନର ରନ୍ଥାମ୍ବୋର୍ ଓ ମଧ୍ୟପ୍ରଦେଶର ପାନ୍ନା ଭଳି ବ୍ୟାଘ୍ର ସଂରକ୍ଷଣ କେନ୍ଦ୍ରଗୁଡ଼ିକର ଖୁବ୍ ଶୀଘ୍ର ଯତ୍ନ ନିଆ ନଗଲେ ବାଘ ସଂଖ୍ୟା ଯଥେଷ୍ଟ କମିବାର ସମ୍ଭାବନା ଅଛି । ଦେଶରେ ମୋଟ ୨୭ଟି ବ୍ୟାଘ୍ର ସଂରକ୍ଷଣ କେନ୍ଦ୍ର ମଧ୍ୟରୁ ୧୨ଟି ବ୍ୟାଘ୍ର ସଂରକ୍ଷଣ କେନ୍ଦ୍ର ସନ୍ଧିକ୍ଷଣରେ ଅଛି । ଚୀନ ଦେଶରେ ଗୋଟିଏ ବ୍ୟାଘ୍ର ସଂରକ୍ଷଣ କେନ୍ଦ୍ର ସନ୍ଧିକ୍ଷଣରେ ଅଛି । ଚୀନ ଦେଶରେ ଗୋଟିଏ ବାଘ ଶରୀରର ମୂଲ୍ୟ ପ୍ରାୟ ୩୦ ଲକ୍ଷ ଟଙ୍କା । ଚୀନ ଓ ପୂର୍ବ ଏସିଆରେ ପାରମ୍ପରିକ ଔଷଧ ପ୍ରସ୍ତୁତି ନିମନ୍ତେ ବାଘ ଶରୀରକୁ ବ୍ୟବହାର କରାଯାଇଥାଏ ।





ବିଂଶ ଶତାବ୍ଦୀର ଆରମ୍ଭରେ ପ୍ରାୟ ୧ ଲକ୍ଷରୁ ଅଧିକ ବାଘ ପୃଥିବୀରେ ବାସ କରୁଥିବା ଜଣାପଡ଼ିଛି । ୧୯୦୦ ମସିହା ପରଠାରୁ ସମଗ୍ର ପୃଥିବୀରେ ବାଘମାନଙ୍କ ସଂଖ୍ୟା କମିବାରେ ଲାଗିଛି । ଏହି ୧୦୫ ବର୍ଷ ମଧ୍ୟରେ ବାଘମାନଙ୍କର ସଂଖ୍ୟା ୯୫% ଲୋପପାଇ ଗଲେଣି । ପୃଥିବୀର ମୋଟ ୮ ପ୍ରକାର ବାଘମାନଙ୍କ ମଧ୍ୟରୁ ଗତ ୨୦ ବର୍ଷ ମଧ୍ୟରେ ୩ଟି ପ୍ରଜାତିର ବାଘ ସଂପୂର୍ଣ୍ଣ ଲୋପ ପାଇଗଲେଣି । ଚୀନ, ଋଷିଆ, ଭିଏତନାମ, ମାଲେସିଆ, କାମ୍ବୋଡ଼ିଆ, ଦକ୍ଷିଣ କୋରିଆ, ଥାଇଲାଣ୍ଡ, ନେପାଳ, ବର୍ମା, ପାକିସ୍ଥାନ, ଭୂଟାନ, ବାଙ୍ଗଲାଦେଶ ଓ ଆମ ଦେଶରେ ବାଘ ଦେଖାଯାଆନ୍ତି । ଏକ ବିରଳ ପ୍ରଜାତିର ବାଘ ଚୀନ ଦେଶରେ ଦେଖାଯାଏ । ଏବେ ସେମାନଙ୍କର ସଂଖ୍ୟା ପ୍ରାୟ ୫୦ରୁ କମ୍‌ରେ ଆସି ପହଞ୍ଚିଲାଣି । ସେମାନେ ଆଉ ଅଳ୍ପଦିନରେ ପୃଥିବୀରୁ ସଂପୂର୍ଣ୍ଣ ନିଶ୍ଚିହ୍ନ ହେବାର ଯଥେଷ୍ଟ ସମ୍ଭାବନା ଅଛି । ସେମାନଙ୍କୁ କେବଳ ଭବିଷ୍ୟତରେ କାଗଜର ଚିତ୍ରରେ ଦେଖିବାକୁ ମିଳିବ । ବାଘ ଏକଦା ଉତ୍ତର ଗୋଲାର୍ଦ୍ଧର ସୁଦୂର ସାଇବେରିଆଠାରୁ ଦକ୍ଷିଣଗୋଲାର୍ଦ୍ଧର

ଇଣ୍ଡୋନେସିଆ ଏବଂ ବାଲି ଦ୍ୱୀପ ପର୍ଯ୍ୟନ୍ତ, ପଶ୍ଚିମରେ ତୁର୍କିଠାରୁ ପୂର୍ବରେ ଋଷିଆ ଏବଂ ଚୀନ ବେଳାଭୂମି ପର୍ଯ୍ୟନ୍ତ । ବରଫାବୃତ୍ତ ଅତି ଥଣ୍ଡାଠାରୁ ଆରମ୍ଭ କରି ଅତି ଉଷ୍ମ ଜଳବାୟୁର ପରିବେଶରେ ନିଜକୁ ଖାପଖୁଆଇ ବାଘକୁଳ ଅନାୟାସରେ ବାସ କରିଥିଲେ ଏହି ପୃଥିବୀରେ । ପୃଥିବୀରେ ମୋଟ ପାଞ୍ଚଟି ପ୍ରଜାତିର ବାଘମାନଙ୍କର ସଂଖ୍ୟା ଏବେ ପ୍ରାୟ ୧୨,୦୦୦ (ବାର ହଜାର)ରେ ପହଞ୍ଚି ଅଛି । ସେହି ପାଞ୍ଚଟି ପ୍ରଜାତିର ବାଘମାନଙ୍କ ନାମ ହେଉଛି - କ) ବେଙ୍ଗଲ୍ ପ୍ରଜାତି, ଖ) ଇଣ୍ଡୋ-ଚୀନ ପ୍ରଜାତି, ଗ) ଦକ୍ଷିଣ ଚୀନ ପ୍ରଜାତି, ଘ) ସାଇବେରିଆ ପ୍ରଜାତି ଓ ଙ) ସୁମାତ୍ରା ପ୍ରଜାତି ।

ବିଶେଷଜ୍ଞମାନଙ୍କ କହିବା ଅନୁସାରେ ଆଜି ପୃଥିବୀରେ ଅତିବେଶିରେ ଗୋଟିଏ ଜଙ୍ଗଲରେ ପ୍ରାୟ ସର୍ବାଧିକ ୨୫୦ଟି ବାଘ ଥିବାର ଗଣନା କରାଯାଇଛି । ଦକ୍ଷିଣ ଚୀନର 'ଆମୟ' ଜାତିର ବାଘବଂଶ କେବଳ ଚିଡ଼ିଆଖାନାରେ ଆବଦ୍ଧ ରହିଛି । ସେମାନଙ୍କର ସଂଖ୍ୟା ପ୍ରାୟ ୫୦ ମଧ୍ୟରେ ସୀମିତ । ପୃଥିବୀର ବିଭିନ୍ନ ଚିଡ଼ିଆଖାନାରେ ପ୍ରାୟ ୩୪୦ଟି ବାଘ ରହିଥିବା ଏକ ଆକଳନରୁ ଜଣାପଡ଼ିଛି । ସାଇବେରିଆ ଅଞ୍ଚଳର 'ଅମ୍ୟର' ଜାତିର ବାଘ ଏବେ ଘୋର ସଂକଟ ଓ ସଂଘର୍ଷ ମଧ୍ୟରେ କାଳାତିପାତ କରୁଛନ୍ତି । ୧୯୩୦ ମସିହାରେ ବାଲିଦ୍ୱୀପ ବାଘ ଓ ୧୯୭୦ ମସିହାରେ କାସ୍ପିଆନ୍ ଅଞ୍ଚଳ ବାଘ, ୧୯୮୦ ମସିହାରେ ଜାଭାଦ୍ୱୀପ ବାଘ ଓ ୨୦୦୫ ମସିହାରେ ରାଜସ୍ଥାନର ସାରିସ୍କା ଜାତୀୟ ଉଦ୍ୟାନର ବାଘ ସଂପୂର୍ଣ୍ଣ ଲୋପ ପାଇଗଲେଣି ।

ଆମ ଦେଶରେ ଦ୍ରୁତ ହ୍ରାସ ପାଉଥିବା ବାଘ ସଂଖ୍ୟା-

| ମସିହା | ବାଘ ସଂଖ୍ୟା |
|---|---|
| ୧୯୭୨ | ୧୮୨୭ |
| ୧୯୭୯ | ୩୦୧୫ |
| ୧୯୮୪ | ୪୦୦୫ |
| ୧୯୮୯ | ୪୩୩୪ |
| ୧୯୯୩ | ୩୭୫୦ |
| ୧୯୯୭ | ୩୫୦୮ |
| ୨୦୦୪ | ୩୫୦୦ |
| ୨୦୦୫ | ୩୭୦୦ |
| ୨୦୦୬ | ୪୦୦୦ (ପ୍ରାୟ) |

ବାଘର ପ୍ରିୟ ସ୍ଥାନ ଘଞ୍ଚ ଜଙ୍ଗଲ । ବାଘ ଭୟରେ ଜଙ୍ଗଲର ସମସ୍ତ ଗଛଲତା ସୁରକ୍ଷିତ ରହେ । ଏହା ଜଙ୍ଗଲର ଶୋଭା ବର୍ଦ୍ଧନ କରିଥାଏ । ବରଫ ଅଞ୍ଚଳର ବାଘ, ମେଘୁଆ ବାଘ, ଧଳାବାଘ, ଚିତାବାଘ, କଲରା ପତ୍ରିଆ ବାଘ ଓ ମହାବଳ ବାଘ 'ଜୈବ ବିବିଧତା'ର ଜ୍ୱଳନ୍ତ ଦୃଷ୍ଟାନ୍ତ । ଖାଦ୍ୟ ଓ ପରିବେଶ ସନ୍ତୁଳନ ରକ୍ଷା କରିବାରେ ଏମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥାଏ ।

ସିଂହକୁ ଜଙ୍ଗଲର ରାଜା କହନ୍ତି । ସେ ଖୋଲା ଓ ସମତଳ ଅଞ୍ଚଳରେ ବାସ କରେ । ସିଂହ ଓ ବାଘର ଲଢ଼େଇରେ ସାଧାରଣତଃ ସିଂହର ପରାସ୍ତ ଘଟିଥାଏ । ସିଂହ ଜଙ୍ଗଲର କେତେକ ଛୋଟବଡ଼ ତୃଣଭୋଜୀ ଜନ୍ତୁଙ୍କୁ ଖାଇ ବଞ୍ଚେ ଓ ଖାଦ୍ୟଶୃଙ୍ଖଳ ତଥା ପରିବେଶ ସନ୍ତୁଳନ ରକ୍ଷା କରେ । ଏହାର ନିଜ ପରିବାର ସହ ରହି ପରିବେଶର ସୁରକ୍ଷା କରିଥାଏ ।

ସ୍ଥଳଚର ପ୍ରାଣୀମାନଙ୍କ ଭିତରେ ହାତୀ ସବୁଠାରୁ ବଡ଼ । ଏହା ବିରାଟ ଜୀବ ହୋଇଥିବାରୁ ବେଶୀ ପରିମାଣର ପୁଷ୍ଟିକର ଖାଦ୍ୟ ଆବଶ୍ୟକ କରେ । ଘଞ୍ଚ ଜଙ୍ଗଲ ହାତୀ ପାଇଁ ଖୁବ୍ ଅନୁକୂଳ । ଏହା ଯେଉଁଠାରେ ରହେ ସେଠାରେ ଅନେକ ଛୋଟ ଛୋଟ ତୃଣଭୋଜୀ ପ୍ରାଣୀ ଓ ବାଘଭଳି ମାଂସାଶୀ ଜୀବମାନେ ବସବାସ କରି ପରିବେଶର ଶୋଭା ବଢ଼େଇବା ସଂଗେସଂଗେ ସୁରକ୍ଷା ମଧ କରିଥାନ୍ତି । ଓଡ଼ିଶା ତଥା ଭାରତର ବିଭିନ୍ନ ଜଙ୍ଗଲ, ବର୍ମା, ଶ୍ରୀଲଙ୍କା ଓ ମାଳୟ ଆଦି ଦେଶରେ ହାତୀ ବାସ କରେ । ଏହାର ଖାଦ୍ୟ ଅଭ୍ୟାସ ପରିସଂସ୍ଥା ପାଇଁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଅଟେ । ଅନେକ ଗଛର ମଞ୍ଜି ହାତୀଙ୍କ ଭଳି ଜୀବର ପେଟ ଭିତର ଦେଇଗଲେ ଭଲ ଗଜା ହୋଇଥାଏ । କାରଣ ହାତୀର ପେଟ ଭିତରେ ଥିବା ଏନ୍‌ଜାଇମ୍, ମଞ୍ଜିର ଟାଣୁଆ ଖୋଳପାକୁ ନରମ କରିଦିଏ । ଏହାର ମଳ ଅନେକ ଜାତିର ମାଛି, ପୋକ ଓ କେତେକ ଗୋବର ପୋକର ଖାଦ୍ୟ ରୂପେ ବ୍ୟବହୃତ ହୁଏ । ବେଲ, ଆମ୍ବ, କାଞ୍ଚନ, ଲାଜକୁଳି ଆଦି ଉଦ୍ଭିଦର ବୀଜ ବିକ୍ଷେପରେ ହାତୀ ବିଶେଷ ସାହାଯ୍ୟ କରେ । ଏହା ସାଧାରଣତଃ ଜଙ୍ଗଲର ଯେଉଁ ବାଟରେ ଯିବା ଆସିବା କରେ ତାହା ରାସ୍ତା ରୂପେ ବ୍ୟବହାର ହୋଇଥାଏ । ଏଣୁ ଅତୀତରେ ରାଜାରାଜୁଡ଼ା ସମୟରେ ଯେତେବେଳେ ରାସ୍ତାଘାଟ ନଥିଲା, ସେତେବେଳେ ହାତୀପିଠିରେ ସୈନ୍ୟ, ସାମନ୍ତ ଯେଉଁ ବାଟ ଦେଇ ଯାଉଥିଲେ ତାହା ପ୍ରଥମ ରାସ୍ତାର ମାନଚିତ୍ର ରୂପେ ପରିଗଣିତ ହେଉଥିଲା । କୌଣସି ସ୍ଥାନର ହାତୀ ସଂଖ୍ୟା ତା'ର ପରିବେଶ ଅବସ୍ଥା ସମ୍ବନ୍ଧରେ ସୂଚନା ଦିଏ । ଆମ ରାଜ୍ୟର କଳାହାଣ୍ଡି, କେଉଁଝର, ଚନ୍ଦକା ଓ ଉଷାକୋଠି ଆଦି ସ୍ଥାନରେ ପ୍ରାୟ ୨୦୦୦ (ଦୁଇ ହଜାର) ହାତୀ ଅଛନ୍ତି । ଆମ ଦେଶର ବିଭିନ୍ନ ଜଙ୍ଗଲରେ ପ୍ରାୟ ୨୪,୦୦୦ ହାତୀ ଥିବା ଆକଳନରୁ ଜଣାପଡ଼ିଛି । ଏହା ଏକ ଶାନ୍ତଶିଷ୍ଟ ଜୀବ । ମଣିଷ ପରି ଏମାନେ ଅନେକ ନିୟମ ମାନି ଚଳନ୍ତି । ଏମାନେ ବୁଦ୍ଧିଆ ହୋଇଥିବାରୁ ସର୍କସ୍‌ରେ ନାନାପ୍ରକାର ଖେଳ ଦେଖାନ୍ତି ।

ଗୋରୁ, ଗାଈ, ମଇଁଷି, ଛେଳି, ମେଣ୍ଢା ଆଦି ବିଭିନ୍ନ ପ୍ରାଣୀ କୃଷିଜାତ ଆବର୍ଜନା, ଘାସ, ତୋରାଣି, ପେଜ, କୁଟା, ନଡ଼ା, କୁଣ୍ଡା ଓ

ଅଦରକାରୀ ଡାଳପତ୍ର, ଡାଳିଚୋପା ଓ ଡାଳିଗୁଣ୍ଡ ଇତ୍ୟାଦି ଖାଇ ବଞ୍ଚନ୍ତି । ଫଳରେ ଆମ ପରିବେଶ ପରୋକ୍ଷରେ ସୁରକ୍ଷିତ ହୋଇରହେ । ବାସସ୍ଥାନ ଚାରିପଟେ ଥିବା ଅନାବନା ଘାସ, କଣ୍ଟା ଗଛ, ଦଳକୁ ଏମାନେ ଖାଇ ସଫା କରିଦେବା ଯୋଗୁଁ ମଶା, ମୂଷା, ମାଛି ଓ ନାନା କୀଟପତଙ୍ଗ ପରିବେଶରେ ରହନ୍ତି ନାହିଁ । କୁକୁର, ବିଲୁଆ, ରାମ ଶିଆଳ, ହାଏନା, କୋକିଶିଆଳୀ ଭଳି ପ୍ରାଣୀ ମଲା ଜୀବଜନ୍ତୁଙ୍କ ମାଂସ, ହାଡ଼ ଖାଇ ସଫାକରି ପରିବେଶକୁ ପ୍ରଦୂଷଣ ମୁକ୍ତ କରିଥାଆନ୍ତି । ଗାଁଗହଳିର ରାସ୍ତା କଡ଼ର ମଣିଷର ମଳକୁ କୁକୁର ଓ ଘୁଷୁରୀ ଖାଦ୍ୟ ରୂପେ ବ୍ୟବହାର କରି ପରିବେଶକୁ ସୁରକ୍ଷିତ ଓ ପ୍ରଦୂଷଣ ମୁକ୍ତ କରନ୍ତି । ନାଳନର୍ଦ୍ଦମାର ଅଳିଆ, ପଚାସଡ଼ା ଓ ଅନାବନା ଗଛର ମୂଳକୁ ଘୁଷୁରୀ ଖାଇ ସଫା କରିଦିଏ । ବାଲି ହରିଣ ବା କୃଷ୍ଣସାରମୃଗ କୌଣସି ଅଞ୍ଚଳ ପାଇଁ ଶୁଭଦାୟକ ଓ ଶସ୍ୟକ୍ଷେତ୍ର ଫୁଲ ଫଳରେ ଭରିଉଠେ ବୋଲି ଲୋକମାନଙ୍କର ବିଶ୍ୱାସ । ଜିରାଫ ସବୁଠୁଁ ଅଧିକ ଡେଙ୍ଗା ପ୍ରାଣୀ । ଏହା ଶବ୍ଦ ପ୍ରତି ସମ୍ବେଦନଶୀଳ ଓ ପରିବେଶର ଶ୍ରୀବୃଦ୍ଧି କରେ । ବିଭିନ୍ନ ଗଛର କଣ୍ଟାଳିଆ ପତ୍ରଗୁଡ଼ିକୁ ଭକ୍ଷଣ କରେ । ଏହା ଖୁବ୍ ନିରୀହ ପ୍ରାଣୀ ଅଟେ । ଭାରତୀୟ ଗଣ୍ଡା ପୃଥିବୀର ଗଣ୍ଡାମାନଙ୍କ ମଧ୍ୟରେ ସବୁଠୁଁ ବଡ଼ । ଏହା ଆଦୌ ହିଂସ୍ର ନୁହେଁ । ସଂପୂର୍ଣ୍ଣ ନିରାମିଷାସୀ, ପରିବେଶର ଏହା ଶ୍ରୀବୃଦ୍ଧି କରେ । ଜଳହସ୍ତୀ ଉଭୟଚର ପ୍ରାଣୀ । ଏହା ଖୁବ୍ ଶାନ୍ତି ପ୍ରିୟ, କାହାରି ଅନିଷ୍ଟ କରେ ନାହିଁ । ଭାଲୁ ଜଙ୍ଗଲରେ ରହେ ଓ ଏହା ଯୋଗୁଁ ଜଙ୍ଗଲ ସୁରକ୍ଷିତ ରହେ । ଏହା ପିମ୍ପୁଡ଼ି, ଉଇ, ଫଳମୂଳ ଓ ଅନ୍ୟ ଜୀବଜନ୍ତୁଙ୍କ ମାଂସ ଖାଇ ବଞ୍ଚନ୍ତି । କୋଆଲା, ଭାଲୁଭଳି ଜୀବ ଏହା ଆଦୌ ପାଣି ପିଏନି । ଏ ପ୍ରକାର ପ୍ରାଣୀଯୋଗୁଁ ଜଙ୍ଗଲର ଜଳ ଆଦୌ ଦୂଷିତ ହୁଏ ନାହିଁ । ନିଜ ଶରୀର ପାଇଁ ଆବଶ୍ୟକ ଜଳ ଏହା ଖାଦ୍ୟରୁ ହିଁ ପାଇଥାଏ । ଜେବ୍ରା, ଘୋଡ଼ା, ଗଧ, ଗୟଳ, ପାଣ୍ଡା, ଖଚର, ହରିଣ, ଚମରିଗାଇ, କଙ୍ଗାରୁ ଓ କୁମ୍ଭୀର ଆଦି ବିଭିନ୍ନ ପ୍ରାଣୀ ପରିବେଶ ସୁରକ୍ଷା ରଖିବା ସଂଗେସଂଗେ ଅନେକ ଉପକାର କରିଥାଆନ୍ତି ।

ବିରାଡ଼ି ମୂଷା ଖାଏ, ମାଛକଣ୍ଟା, ଅଇଁଠା ଓ ଅଦରକାରୀ କାଦ୍ୟ ଖାଇ ପରିବେଶକୁ ସୁରକ୍ଷା ରଖେ । ଠେକୁଆ ତୃଣଭୋଜୀ ଏହା ଜଙ୍ଗଲରୁ ଅନାବନା ଘାସ ପତ୍ର ଖାଇ ବଞ୍ଚେ । ଡାମଣା ଭଳି ଅନେକ ସାପ ମୂଷା ଖାଇ ବଞ୍ଚନ୍ତି ଓ ପରୋକ୍ଷରେ ଶସ୍ୟ ନଷ୍ଟ କରୁଥିବା ମୂଷାଙ୍କୁ ମାରି ମଣିଷର ଉପକାର କରନ୍ତି । ଓଟ ଶରୀରର ବିପାକୀୟ ହାର ବହୁତ କମ୍ । ମଳମୂତ୍ରରେ ଏହା ଖୁବ୍ କମ୍ ପରିମାଣର ଜଳୀୟ ଅଂଶ ତ୍ୟାଗ କରି ଜଳ ସଂରକ୍ଷଣ କରେ । ଏହା ଶୁଖିଲା ଗଛ, ପତ୍ର ଖାଇ ପରିବେଶକୁ ସଫାସୁତୁରା ରଖେ । ଶରୀରର ତାପମାତ୍ରାକୁ ବଢ଼େଇ ପରିବେଶର ତାପମାତ୍ରା ଅତ୍ୟଧିକ ନହେବାଯାଏ ନିଜର ଶରୀରରୁ ଝାଳ ବାହାରିବା ବନ୍ଦ କରିଦେଇ ଜଳକ୍ଷୟକୁ ନିୟନ୍ତ୍ରଣ କରେ । କସ୍ତୁରୀମୃଗର ପରିସ୍ରା ଲାଲ୍ ଓ କସ୍ତୁରୀ ଗନ୍ଧଯୁକ୍ତ । କସ୍ତୁରୀ ମୃଗୁଣୀର ପରିସ୍ରା ଗନ୍ଧହୀନ ଓ ବର୍ଣ୍ଣ ହଳଦିଆ । ଏମାନେ ଗୋଟିଏ ସ୍ଥାନରେ ମଳତ୍ୟାଗ କରନ୍ତି । ତା'ପରେ ସେ ମଳ ଉପରେ ବାଲି, ପତ୍ର ବା ପୁରୁଣା ମଳକୁ ଘୋଡ଼େଇ ଦେଇ ଚାଲିଯାଆନ୍ତି । ବିଭର ଭଳି ଜୀବ ଖୁବ୍ ବୁଦ୍ଧିମାନ ଓ ଏମାନଙ୍କୁ ପ୍ରକୃତିର ଇଞ୍ଜିନିୟର କହନ୍ତି । ଏହାର ବସାଘର ନିର୍ମାଣ ଶୈଳୀ ଖୁବ୍ ଚମତ୍କାର । ଧଳା ଭାଲୁ ବଣ ମୂଷା ଖାଇ ବଞ୍ଚେ ଓ ପରିବେଶର ସୁରକ୍ଷା କରିଥାଏ । ଗରିଲା, ଶିବନ୍, ସିମ୍ପାଞ୍ଜି, ଓରାଙ୍ଗ ଉଟାନ୍ ବାଲ୍ୟ ଅବସ୍ଥାରେ ଶାନ୍ତ, କିନ୍ତୁ ବଡ଼ହେଲେ ବିପଦପୂର୍ଣ୍ଣ, ପୋଷା ମନେଇଲେ ସହଜରେ ମାନନ୍ତି । ଜଙ୍ଗଲ ଜଗୁଆଳୀ ହିସାବରେ ଥାଆନ୍ତି । ମାଙ୍କଡ଼, ସୁନା ଲାଞ୍ଜି ମାଙ୍କଡ଼, ପାତି ମାଙ୍କଡ଼ ଇତ୍ୟାଦି ଜଙ୍ଗଲରେ ବସବାସ କରନ୍ତି ଓ ନାନାପ୍ରକାର ଗଛର ଫଳ ଖାଇ ଉଦ୍ଭିଦର ବଂଶ ବୃଦ୍ଧି କରିଥାନ୍ତି । ଏମାନେ ମଧ୍ୟ ପରୋକ୍ଷରେ ପରିବେଶ ସୁରକ୍ଷା କରିଥାନ୍ତି । ପ୍ରତ୍ୟେକ ପ୍ରାଣୀଙ୍କର ମଳମୂତ୍ର ଜଙ୍ଗଲର ଗଛଲତା ନିମନ୍ତେ ଉତ୍କୃଷ୍ଟ ଖତ ବା ସାରାଂଶ ହିସାବରେ ଉପଯୋଗ ହୋଇଥାଏ । ଅକ୍ଟୋବର ମାସର ପ୍ରଥମ ସପ୍ତାହକୁ ବନ୍ୟ ପ୍ରାଣୀ ସପ୍ତାହ ରୂପେ ପାଳନ କରି ବନ୍ୟ ପ୍ରାଣୀଙ୍କ ସଂରକ୍ଷଣ କରାଯିବା ଉଚିତ ।

ଏଣୁ କୁହାଯାଇଛି -

'ପ୍ରାଣୀ ଜଗତକୁ ଧ୍ୱଂସ କଲେ ଆମେ ଭୋଗିବା ନରକ ଦୁଃଖ
ସରବେ ଆମର ଉପକାରୀ ପ୍ରାଣୀ ତାଙ୍କ ଯୋଗୁଁ ମିଳେ ଅପାର ସୁଖ ।'

ଏବଂ

'ପ୍ରାଣୀଙ୍କୁ ଆସିଲେ ବିପଦ
କେହି ନୋହିବେ ନିରାପଦ ।'

କ୍ୱା.ନଂ- ବି: ୧୧୩/୧
ନାଲକୋ ଟାଉନ୍ ସିପ୍
ଦାମନଯୋଡ଼ି-୭୬୩୦୦୮



# ଓଡ଼ିଆ ଚଳଚ୍ଚିତ୍ରର ଭବିଷ୍ୟତ

ଦିଲୀପ ହାଲି

୭୧ ବର୍ଷର ଓଡ଼ିଆ ଚଳଚ୍ଚିତ୍ର ପର୍ଯ୍ୟାଲୋଚନା କଲେ ଜଣାପଡ଼େ ଯେ, ଜାତୀୟ, ଆନ୍ତର୍ଜାତୀୟ ଚଳଚ୍ଚିତ୍ର ମାନଚିତ୍ରରେ ଓଡ଼ିଆ ଚିତ୍ର ନିଜର ଅସ୍ତିତ୍ୱ ଜାହିର କରିବା ପାଇଁ ଉଦ୍ୟମ ଆରମ୍ଭ କରିଛି ମାତ୍ର । ପ୍ରଥମରୁ 'ମାୟାମିରିଗ' ଏ କ୍ଷେତ୍ରରେ ଅଗ୍ରଣୀ ଭୂମିକା ଗ୍ରହଣ କରିଛି । ଚଳଚ୍ଚିତ୍ରକୁ ଶିଳ୍ପର ମର୍ଯ୍ୟାଦା ଦିଆଯାଇଛି । ଓଡ଼ିଆ ଚଳଚ୍ଚିତ୍ରକୁ ସମ୍ପୂର୍ଣ୍ଣ ଭାବେ ପ୍ରମୋଦକର ମୁକ୍ତ କରିଥିବା ବର୍ତ୍ତମାନ ସରକାରଙ୍କ ସମୟରେ ଏକ ଐତିହାସିକ ପଦକ୍ଷେପ ।

୧୯୩୬ରେ 'ସୀତା ବିବାହ'ରୁ ୨୦୦୭ 'ତୁମକୁ ପାରୁନି ତ ଭୁଲି' ପର୍ଯ୍ୟନ୍ତ ସମୁଦାୟ ଚିତ୍ର ୪୦୩ଟି । ଦର୍ଶକ ରୁଚି ପରିବର୍ତ୍ତନଶୀଳ । ନୂଆ କଥା, ନୂଆ ଚିନ୍ତାଧାରାକୁ ଗ୍ରହଣ କରିବାରେ ସେମାନେ ସବୁବେଳେ ଆଗ୍ରହ ପ୍ରଦର୍ଶନ କରୁଛନ୍ତି । ଭଲ ଚଳଚ୍ଚିତ୍ର ନିର୍ମାଣ କରିବା ପାଇଁ ଓଡ଼ିଶାରେ ପ୍ରତିଭାର ଅଭାବ ନାହିଁ । ୭୧ ବର୍ଷର ଚଳଚ୍ଚିତ୍ର ଜଗତରେ ବିଶ୍ୱାସଯୋଗ୍ୟ ବିତରଣ ସଂସ୍ଥା ନଥିବା ହେତୁ ଚଳଚ୍ଚିତ୍ର ନିର୍ମାତାମାନେ ଚଳଚ୍ଚିତ୍ର ନିର୍ମାଣରୁ ନିଜକୁ ଦୂରେଇ ରଖୁଛନ୍ତି । ଫଳରେ ବର୍ଷକୁ ବର୍ଷ ଓଡ଼ିଆ ଚଳଚ୍ଚିତ୍ର ବ୍ୟବସାୟିକ କ୍ଷେତ୍ରରେ ବ୍ୟାପକ କ୍ଷତି ସହୁଛି । ଦର୍ଶକମାନଙ୍କୁ ସାନ୍ତ୍ୱନାମୂଳକ ଆଶ୍ୱାସନା ଦେଇ ଓଡ଼ିଆ ଚିତ୍ର କେବଳ ବୟସ ବଢ଼େଇ ଚାଲିଛି । ଚିତ୍ର ଦୁନିଆରେ ବିଭିନ୍ନ ଦିଗ ସମ୍ପର୍କରେ ଏଠାରେ କେତେକ କଥା ଉଲ୍ଲେଖ କରାଗଲା ।



ଓଡ଼ିଆ ଚଳଚ୍ଚିତ୍ର ଅଭିନେତ୍ରୀ ଆମେଲୀ

ଜାତୀୟ ଆନ୍ତର୍ଜାତୀୟ ଚଳଚ୍ଚିତ୍ରରେ ଓଡ଼ିଆ ଚିତ୍ର ଶ୍ରୀ ମୃଣାଳ ସେନଙ୍କ ନିର୍ଦ୍ଦେଶିତ - 'ମାଟିର ମଣିଷ' ଓ ଶ୍ରୀ ସଂପଦ ମହାପାତ୍ରଙ୍କ ନିର୍ଦ୍ଦେଶିତ 'ମାୟା ମିରିଗ' ୭୧ ବର୍ଷର ଚଳଚ୍ଚିତ୍ର ଜଗତର ଶ୍ରେଷ୍ଠ ସୃଷ୍ଟି । କିନ୍ତୁ ନିକଟ ଭବିଷ୍ୟତରେ ଏଭଳି ମାନର ଆଉ କେତୋଟି ଚଳଚ୍ଚିତ୍ର ତିଆରି ନହେଲେ ଏ ଉଦ୍ୟମ ଫଳପ୍ରଦ ହେବ ନାହିଁ । ଓଡ଼ିଆ ଚଳଚ୍ଚିତ୍ର ବୟସ ଅନୁସାରେ ଯାହା ପରିପକ୍ୱତା ଲାଭ କରିଛି, ତାହାକୁ ତର୍ଜମା କଲେ ମର୍ମନ୍ତୁଦ କାହାଣୀଟିଏ ହେବ । କେବଳ ଆଶ୍ୱସ୍ତିମୂଳକ ବିଚାର କରି ଦେଖିଲେ ଆମେ କେବଳ ଅନ୍ୟାନ୍ୟ ଭାଷାଭାଷୀ ଚିତ୍ରର ଅନୁବାଦ ଓ ଡବିଂ ଚିତ୍ର ଦେଖୁଛୁଁ । ଫଳରେ ନିଜସ୍ୱ କୌଣସି ଓଡ଼ିଆ ଚଳଚ୍ଚିତ୍ରର ବୈଶିଷ୍ଟ୍ୟ ପ୍ରତିପାଦନ କରିହେବ ନାହିଁ । ଜାତୀୟ ଚଳଚ୍ଚିତ୍ର ପ୍ରତିଯୋଗିତାରେ ନିର୍ଦ୍ଦେଶକ ମନମୋହନ ମହାପାତ୍ରଙ୍କ 'ଶୀତରାତି', 'ନୀରବ ଝଡ଼', 'କ୍ଳାନ୍ତ ଅପରାହ୍ନ', 'ମଝି ପାହାଚ', 'ନିଷିଦ୍ଧ ସ୍ୱପ୍ନ', 'କିଛି ସ୍ମୃତି କିଛି ଅନୁଭୂତି', 'ଅନ୍ଧ ଦିଗନ୍ତ', 'ଭିନ୍ନ ସମୟ', 'ମୁହୂର୍ତ୍ତ' ଆଦି ଚିତ୍ରଗୁଡ଼ିକର ସମ୍ମାନ ଲାଭ ଓଡ଼ିଶା ପାଇଁ ସୌଭାଗ୍ୟର ବିଷୟ । ହିନ୍ଦୀ ତଥା ଓଡ଼ିଆ ଅଭିନେତ୍ରୀ ଓ ନିର୍ଦ୍ଦେଶିକା ଡଲି ଜେନାଙ୍କ 'ତାରା' (୧୯୯୨) ଜାତୀୟ ଚଳଚ୍ଚିତ୍ର ପ୍ରତିଯୋଗିତାରେ ଶ୍ରେଷ୍ଠ ଆଞ୍ଚଳିକ ଚିତ୍ରଭାବେ ପୁରସ୍କାର ଲାଭ କରିଥିଲା । ବିଶିଷ୍ଟ କ୍ୟାମେରାମ୍ୟାନ୍ ନିର୍ଦ୍ଦେଶକ ଅପୂର୍ବ ବୀର ଜାତୀୟ ଚଳଚ୍ଚିତ୍ର ଉନ୍ନୟନ ନିଗମର ଆର୍ଥିକ ସହାୟତାରେ ପ୍ରଥମ ଓଡ଼ିଆ ଚିତ୍ର 'ଆଦି ମୀମାଂସା' (୧୯୯୨) କରି ଜାତୀୟ ସ୍ତରରେ ଶ୍ରେଷ୍ଠ ଜାତୀୟ ସଂହତି ପୁରସ୍କାର ପାଇଥିଲେ । ବୀରଙ୍କ ପରବର୍ତ୍ତୀ ଚିତ୍ର 'ଆରଣ୍ୟକ' ମଧ୍ୟ ଜାତୀୟ ସ୍ତରରେ ପ୍ରଦର୍ଶିତ ହୋଇ ଉଚ୍ଚ ପ୍ରଶଂସିତ ହୋଇଥିଲା । ଜାତୀୟ, ଆନ୍ତର୍ଜାତୀୟ ଚିତ୍ର ଦୁନିଆଁରେ ନିର୍ଦ୍ଦେଶକ ଘନଶ୍ୟାମ ମହାପାତ୍ରଙ୍କ ଚିତ୍ର 'କନକଲତା' (ପଲ୍ଲୀକବି ନନ୍ଦକିଶୋର ବଳଙ୍କ ରଚିତ ଉପନ୍ୟାସ) ପୁରସ୍କାର ଲାଭ କରିଥିଲା । ଶ୍ରୀ ମହାପାତ୍ର ମଧ୍ୟ ପ୍ରାମାଣିକ ଚିତ୍ର କରି ଜାତୀୟ ସ୍ତରରେ ନିଜର ସୁଖ୍ୟାତି ବଜାୟ ରଖିଛନ୍ତି । ୧୯୯୮ର ଆନ୍ତର୍ଜାତୀୟ ଚଳଚ୍ଚିତ୍ର ଉତ୍ସବରେ ନିର୍ଦ୍ଦେଶକ ଅପୂର୍ବ କିଶୋର ବୀରଙ୍କ 'ଶେଷ ଦୃଷ୍ଟି' ଓଡ଼ିଆ ଚିତ୍ର ଭାରତୀୟ ପାନୋରମାରେ ପ୍ରଦର୍ଶିତ ହେବା ପାଇଁ ଯୋଗ୍ୟ ବିବେଚିତ ହୋଇଛି । ଶିଶୁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ପର୍ଯ୍ୟାଲୋଚନା କରି ଯୁବ ନିର୍ଦ୍ଦେଶକ ସୁବାଷ ଦାସଙ୍କ ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର 'ଅ ଆକାରେ ଆ' ଜାତୀୟ ପୁରସ୍କାର ଲାଭ ବିଶେଷ

ଉଲ୍ଲେଖଯୋଗ୍ୟ । ନିର୍ଦ୍ଦେଶକ ରାଜୁ ମିଶ୍ରଙ୍କ ନିର୍ଦ୍ଦେଶନାରେ ସାହିତ୍ୟିକ ମନୋଜ ଦାସଙ୍କ ଗଳ୍ପ ଭିତ୍ତିରେ ଓଡ଼ିଆ ଚଳଚ୍ଚିତ୍ର 'ଲକ୍ଷ୍ମୀର ଅଭିସାର' - ୨୦୦୧ ଶ୍ରେଷ୍ଠ ଚଳଚ୍ଚିତ୍ର ଭାବେ ରାଜ୍ୟ ସରକାରଙ୍କ ଚଳଚ୍ଚିତ୍ର ପୁରସ୍କାରରେ ୮ଟି ବିଭାଗରେ ପୁରସ୍କୃତ ହେବା ଆଉ ଏକ ଉଲ୍ଲେଖନୀୟ ଘଟଣା । ହିମାଂଶୁ ଖଟୁଆ ନିର୍ଦ୍ଦେଶିତ ଓଡ଼ିଆ ଚଳଚ୍ଚିତ୍ର 'ଶୂନ୍ୟ ସ୍ୱରୂପ' (୧୯୯୬) ଜାତୀୟ ପୁରସ୍କାର ଲାଭ କରିବା ପରେ ୨୦୦୭ ବର୍ଷର ଓଡ଼ିଆ ଚଳଚ୍ଚିତ୍ର 'କଥାନ୍ତର' ଜାତୀୟ ପୁରସ୍କାର ପାଇବା ଓଡ଼ିଆ ଚିତ୍ର ସମାଜ ପାଇଁ ବିଶେଷ ପ୍ରଶଂସନୀୟ ।

ଓଡ଼ିଆ ଚଳଚ୍ଚିତ୍ର ପାଇଁ ନିର୍ଦ୍ଦେଶକ ବିପ୍ଳବ ରାୟ ଚୌଧୁରୀଙ୍କ ଦାନ ଅତୁଳନୀୟ । ସେ ଓଡ଼ିଆ ପ୍ରଯୋଜକ ସୀତାକାନ୍ତ ମିଶ୍ରଙ୍କ ପ୍ରଯୋଜିତ ପ୍ରଥମ ହିନ୍ଦୀଚିତ୍ର 'ଶୋଧ' ଓ ଏମ୍.ଏମ୍. ପ୍ରଡ଼କ୍ସନ୍‌ର 'ସ୍ପନ୍ଦନ' ନିର୍ମାଣ କରି ଜାତୀୟ ପୁରସ୍କାର ଲାଭ କରିଥିଲେ । ତା'ପରେ ତାଙ୍କଦ୍ୱାରା ଓଡ଼ିଆ ଚିତ୍ର 'ଚିଲିକା ତୀରେ' (୧୯୭୮) ଶ୍ରେଷ୍ଠ ଆଞ୍ଚଳିକ ଚିତ୍ର ଭାବେ ଜାତୀୟ ଚଳଚ୍ଚିତ୍ର ପୁରସ୍କାର ଲାଭ କରିଥିଲା । ଦୀର୍ଘ ଦିନ ପରେ ବିପ୍ଳବ ରାୟ ଚୌଧୁରୀ ଚଳଚ୍ଚିତ୍ର ଉନ୍ନୟନ ନିଗମର ଆର୍ଥିକ ସହାୟତାରେ ଓଡ଼ିଆ ଚିତ୍ର 'ଅରଣ୍ୟ ରୋଦନ' ନିର୍ମାଣ କରି ଜାତୀୟସ୍ତରରେ ସମ୍ମାନିତ ହୋଇଥିଲେ । 'ଅରଣ୍ୟରୋଦନ' ଚିତ୍ର ପରେ ଜାତୀୟ ଚଳଚ୍ଚିତ୍ର ନିଗମର ଆର୍ଥିକ ସହାୟତାକ୍ରମେ ଓଡ଼ିଆ ଚିତ୍ର 'ନିର୍ବାଚନ' ନିର୍ମାଣ କରି ଶ୍ରେଷ୍ଠ ପରିବେଶ ଚିତ୍ର ଭାବେ ଜାତୀୟ ସ୍ତରରେ ସମ୍ମାନିତ କରାଇପାରିଥିଲେ । ବିପ୍ଳବ ରାୟ ଚୌଧୁରୀ ଓଡ଼ିଶାର ବିଭିନ୍ନ ସମସ୍ୟା ସହିତ ଜଡ଼ିତ କଥା ବସ୍ତୁକୁ ନେଇ ଚିତ୍ର ନିର୍ମାଣ କରିବାରେ ବିଶେଷ ଗୁରୁତ୍ୱ ଦେଇଥାନ୍ତି । ୧୯୯୫ରେ ସୁଶାନ୍ତ ମିଶ୍ରଙ୍କ 'ଇନ୍ଦ୍ରଧନୁର ଛାଇ' ଜାତୀୟ ସ୍ତରରେ ସ୍ୱତନ୍ତ୍ର ସମ୍ମାନ ଲାଭ ପରେ ସୋଭିଏତ୍ ରୁଷ୍‌ର 'ସୂଚୀ ଫିଲ୍ମୋତ୍ସବ'ରେ ଶ୍ରେଷ୍ଠ ଚିତ୍ର ଭାବେ ସମ୍ମାନ ଲାଭ କରିଥିଲା । ୧୯୯୫-୯୬ରେ 'ମୋକ୍ଷ' ଶ୍ରେଷ୍ଠ ଆଞ୍ଚଳିକ ଚିତ୍ରଭାବେ ପୁରସ୍କୃତ ହୋଇଅଛି । ଚିତ୍ରଟିର ନିର୍ଦ୍ଦେଶକ ଗୌରୀଶଙ୍କର ଦାଶ ।

୭୧ ବର୍ଷର ଓଡ଼ିଆ ଚଳଚ୍ଚିତ୍ରରେ ଇତିହାସରେ ଅଣ ବୈଷୟିକ ଜ୍ଞାନ ପ୍ରାପ୍ତ ନିର୍ଦ୍ଦେଶକ ଯେଉଁମାନେ ନିଜର ଦକ୍ଷତା ଓ ଅଭିଜ୍ଞତା ବଳରେ ଚିତ୍ର କରି ଜାତୀୟ ସ୍ତରରେ ସୁନାମ ଅର୍ଜନ କରିଥିଲେ, ତନ୍ମଧ୍ୟରେ ନିର୍ଦ୍ଦେଶକ ପ୍ରଣବ ଦାସ ଅନ୍ୟତମ । ତାଙ୍କ ନିର୍ଦ୍ଦେଶିତ ଚିତ୍ର 'ହାକିମ ବାବୁ' ଜାତୀୟ ସ୍ତରରେ ଏବଂ 'ଶ୍ରେଷ୍ଠ ପ୍ରତୀକ୍ଷା' ଓ 'ଅଗ୍ନି ସଂକେତ' ରାଜ୍ୟ ଚଳଚ୍ଚିତ୍ର ପୁରସ୍କାରରେ ଶ୍ରେଷ୍ଠ ଚିତ୍ର ପ୍ରତିଯୋଗିତାରେ ବିଭିନ୍ନ କ୍ଷେତ୍ରରେ ଶ୍ରେଷ୍ଠତ୍ୱ ଲାଭ କରିଥିଲା । ଆନ୍ତର୍ଜାତୀୟ ଚିତ୍ର ବଜାରରେ ନିର୍ଦ୍ଦେଶକ ସବ୍ୟସାଚୀ ମହାପାତ୍ରଙ୍କ 'ଭୁଖା', 'ଗିଜନ' ଫିଲ୍ମ ଉତ୍ସବରେ ଭିନ୍ନ ରୁଚିର ଭାଷାଭାଷୀ ଚିତ୍ର ଭାବେ ପୁରସ୍କୃତ ହୋଇଛି । ସମ୍ମାନିତ ଓଡ଼ିଆ ଚଳଚ୍ଚିତ୍ରଗୁଡ଼ିକ ଓଡ଼ିଶାର ଦର୍ଶକମାନଙ୍କର ରୁଚିବୋଧ ନ ହେଉପଛେ ପୁରସ୍କାର ପାଇ ଆମ ଓଡ଼ିଆ ଚିତ୍ର ଗର୍ବିତ ।

୭୧ ବର୍ଷର ଓଡ଼ିଆ ଚିତ୍ରରେ ଦୁଇଟି ଶିଶୁ ଚଳଚ୍ଚିତ୍ର ନିର୍ମିତ ହୋଇଥିଲା । ପ୍ରଥମଟି ସାଧୁ ମେହେରଙ୍କ 'ବାବୁଲା' ଓ ଦ୍ୱିତୀୟଟି ଅପୂର୍ବ କିଶୋର ବୀରଙ୍କ' 'ଲାବଣ୍ୟପ୍ରୀତି' । ଏହି ଦୁଇଟି ଚିତ୍ରର ପ୍ରଯୋଜକ ଭାରତୀୟ ଶିଶୁ ଚଳଚ୍ଚିତ୍ର ସମିତି 'ଲାବଣ୍ୟପ୍ରୀତି' (୧୯୯୩) ଓଡ଼ିଆ ଚିତ୍ର ସର୍ବଭାରତୀୟ ଶିଶୁ ଚଳଚ୍ଚିତ୍ର ପ୍ରତିଯୋଗିତାରେ ଶ୍ରେଷ୍ଠ ଚିତ୍ର ଭାବେ ପୁରସ୍କୃତ ହେବା ସହ ଆନ୍ତର୍ଜାତୀୟ ଶିଶୁ ଚଳଚ୍ଚିତ୍ର ଉତ୍ସବରେ ମଧ୍ୟ ଏହା ଶ୍ରେଷ୍ଠ ଚିତ୍ର ଭାବେ ପ୍ରଶଂସିତ ହୋଇଥିଲା । ଏଥିରେ ଅଭିନୟ କରିଥିବା ଶିଶୁ ଅଭିନେତା ଶ୍ରୀମାନ୍ ତାରା ଶଙ୍କର ମିଶ୍ର, ଶ୍ରେଷ୍ଠ ଶିଶୁ ଅଭିନେତା ଭାବେ ଆନ୍ତର୍ଜାତୀୟ ସମ୍ମାନ ଲାଭ କରିଥିଲେ । ବୀରଙ୍କ 'ଲାବଣ୍ୟପ୍ରୀତି' ମଧ୍ୟ ଜାପାନରେ ଅନୁଷ୍ଠିତ ଦ୍ୱିତୀୟ ଏସିଆନ୍ ଟି.ଭି. ପ୍ରତିଯୋଗିତାରେ ପୁରସ୍କୃତ ହୋଇଥିଲା ଏବଂ ନିକଟରେ ଭି. ଶାନ୍ତାରାମ ପୁରସ୍କାର ମଧ୍ୟ ପାଇଛି । ବୀରଙ୍କ କାର୍ଯ୍ୟଦକ୍ଷତା ଚିତ୍ରଟିର ଗୁଣାତ୍ମକ ମାନବୃଦ୍ଧିରେ ଯଥେଷ୍ଟ ସହାୟକ ହୋଇଛି । ଯୁବ ନିର୍ଦ୍ଦେଶକ ଗଦାଧର ପୁଟିଙ୍କ ନିର୍ଦ୍ଦେଶିତ 'ପୂଜା ପାଇଁ ଫୁଲଟିଏ' ଚଳଚ୍ଚିତ୍ର ଶିଶୁ ମନସ୍ତାତ୍ତ୍ୱିକ ଚଳଚ୍ଚିତ୍ର ଭାବେ (୨୦୦୭) ମସିହାରେ ଦର୍ଶକମାନଙ୍କର ଆଦର ଲାଭ କରିଛି ।

୭୧ ବର୍ଷର ଓଡ଼ିଆ ଚିତ୍ରରେ ପ୍ରଥମ ଓଡ଼ିଆ ଅଭିନେତ୍ରୀ ମଞ୍ଜୁଳା କୁଅଁର ଜାତୀୟ ଚଳଚ୍ଚିତ୍ର ପୁରସ୍କାରର ଶ୍ରେଷ୍ଠ ପାର୍ଶ୍ୱ ଅଭିନେତ୍ରୀ ଭାବେ ପ୍ରଫୁଲ୍ଲ ମହାନ୍ତିଙ୍କ 'ଭଙ୍ଗାସିଲଟ' ଚିତ୍ର ପାଇଁ ପୁରସ୍କୃତ ହେବା ସୌଭାଗ୍ୟର ବିଷୟ । ୨୦୦୭ ବର୍ଷରେ ସିନେ ଇଣ୍ଡିଆର ଆନ୍ତର୍ଜାତିକ ସିନେ-ଉତ୍ସବରେ ଇତି ସାମନ୍ତଙ୍କ ପ୍ରଯୋଜିତ ଓ ହିମାଂଶୁ ଖଟୁଆ ନିର୍ଦ୍ଦେଶିତ ଓଡ଼ିଆ ଚିତ୍ର 'କଥାନ୍ତର'ରେ ଅଭିନୟ ନିମନ୍ତେ ଅଭିନେତ୍ରୀ ଅନୁ ଚୌଧୁରୀ ଶ୍ରେଷ୍ଠ ଅଭିନେତ୍ରୀ ଭାବେ ପୁରସ୍କୃତ ହେବା ପ୍ରଥମ ଓଡ଼ିଆ ଅଭିନେତ୍ରୀ । ସେହିଭଳି ପ୍ରମାଣିକ ଚିତ୍ର କ୍ଷେତ୍ରରେ ଓଡ଼ିଆ ନିର୍ଦ୍ଦେଶକ ସ୍ୱର୍ଗତଃ ପ୍ରମୋଦ ପତିଙ୍କ ଅବଦାନ ଉଲ୍ଲେଖନୀୟ । ସ୍ୱର୍ଗତଃ ପତି ପ୍ରାମାଣିକ ଚଳଚ୍ଚିତ୍ର ପାଇଁ ବିଦେଶରେ ପ୍ରଥମ ଓଡ଼ିଆ ଭାବେ ସମ୍ମାନିତ ହୋଇଥିଲେ ।

୭୧ ବର୍ଷର ଓଡ଼ିଆ ଚଳଚ୍ଚିତ୍ରକୁ ପର୍ଯ୍ୟାଲୋଚନା କଲେ ଜଣାପଡ଼େ ଯେ ଆଜି ମଧ୍ୟ ଷାଠିଏ ଦଶକର ଓଡ଼ିଆ ଚିତ୍ର 'ଶ୍ରୀଲୋକନାଥ', 'ମାଣିକଯୋଡ଼ି', 'ଅମଡ଼ାବାଟ', 'ଅଭିନେତ୍ରୀ', 'ମଲାଜହ୍ନ', 'କା', 'ଭାଇଭାଉଜ' ଆଦି ବିଶେଷ ଲୋକପ୍ରିୟତା ଅର୍ଜନ କରିପାରିଛି । ସେଇ ସମୟରେ ପଞ୍ଚସଖା ନାମରେ ମିଳିତ ପ୍ରଯୋଜନାରେ ପାଞ୍ଚଜଣ ପ୍ରଯୋଜକ ଯେଉଁ ନିଶାରେ ଓଡ଼ିଆ ଚିତ୍ର ସମୃଦ୍ଧି ପାଇଁ ପରିକଳ୍ପନା କରିଥିଲେ, ସେଥିରୁ ପରବର୍ତ୍ତୀ ସମୟରେ ଓହରିଯାଇ ଜଣେିକ ପ୍ରଯୋଜକ ଅନ୍ୟ ଏକ ସଂସ୍ଥାର ଚିତ୍ର ନିର୍ମାଣ ପାଇଁ ଉଦ୍ୟମ ଆରମ୍ଭ କଲେ । ପ୍ରଯୋଜକ ହେବାରେ ତାଙ୍କର ଥିଲା ଅନେକଟା ସିଦ୍ଧହସ୍ତ ପଣିଆଁ । ଓଡ଼ିଆ ଚିତ୍ରରେ ସେଇ ଦିନଠାରୁ ପ୍ରଯୋଜକମାନଙ୍କ ମଧ୍ୟରେ ତିକ୍ତତା ଆରମ୍ଭ ହେଲା । ଗୁଜରାଟ ନିବାସୀ ବାବୁଲାଲ ଯୋଶୀଙ୍କ ଉଦ୍ୟମରେ 'ଛାୟାବାଣୀ' ପ୍ରତିଷ୍ଠାନର ଚିତ୍ରଗୁଡ଼ିକ ଗୋଟାକ ପରେ

ଗୋଟାଏ ସଫଳ ହେଉଥିବା ସେଇ ସଂସ୍ଥାର ସୁନାମ ଅନ୍ୟାନ୍ୟ ପ୍ରଯୋଜକମାନେ ଅନୁଭବ କଲେ । ପାର୍ବତୀ ଘୋଷ ପ୍ରଡ଼କସନ୍ ମଧ୍ୟ ଏକ ଶୃଙ୍ଖଳିତ ପ୍ରଯୋଜନା ସଂସ୍ଥା । ଓଡ଼ିଆ ଚଳଚ୍ଚିତ୍ରରେ ସମୂହ ଉନ୍ନତି ଦିଗରେ ଯେଉଁ ନିର୍ଦ୍ଦେଶକମାନଙ୍କ ଭୂମିକା ଦୃଷ୍ଟିକୁ ଆସେ ସେମାନଙ୍କ ମଧ୍ୟରେ ସ୍ୱର୍ଗତଃ ନିତାଇ ପାଲିତ୍ ଓ ବ୍ୟୋମକେଶ ତ୍ରିପାଠୀ ଅଗ୍ରଗଣ୍ୟ ।

ସତୁରୀ ଦଶକର ମଧ୍ୟ ଭାଗରେ 'ମମତା' ଚିତ୍ର ସଫଳ ବ୍ୟବସାୟିକ ଚିତ୍ର ଭାବେ ଆଦୃତ ହେଲା । ପରବର୍ତ୍ତୀ ଚିତ୍ର 'ସିନ୍ଦୂର ବିନ୍ଦୁ' ମଧ୍ୟ ନୂତନ ମୋଡ଼ ଓଡ଼ିଆ ଚିତ୍ର ପାଇଁ ଆଣିଦେଇଛି । ୧୯୭୬ରେ 'ଗପ ହେଲେବି ସତ' ପ୍ରଥମ ରଙ୍ଗୀନ ଚିତ୍ର ଓଡ଼ିଆ ଦର୍ଶକମାନଙ୍କ ମନରେ ଅନେକ ଦିନର ଆବେଗ ପୂରଣ କଲା । ପ୍ରଶାନ୍ତ ନନ୍ଦଙ୍କ ପ୍ରଥମ ଚିତ୍ର 'ଶେଷ ଶ୍ରାବଣ' ଆଗାମୀ ଦିନର ପ୍ରଯୋଜକମାନଙ୍କ ପାଇଁ ଆଶାର ଖୋରାକ ଯୋଗାଇଥିଲା । ଓଡ଼ିଆ ଚଳଚ୍ଚିତ୍ର ଜଗତରେ ପ୍ରଥମ ମହିଳା ନିର୍ଦ୍ଦେଶିକା ଭାବେ ପାର୍ବତୀ ଘୋଷ 'ଛ' ମାଣ ଆଠଗୁଣ୍ଠ' ଚିତ୍ରର ନିର୍ମାଣ କରିଥିଲେ ।



ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ ପକ୍ଷରୁ ଆୟୋଜିତ ଚଳଚ୍ଚିତ୍ର ଓ ସାଂସ୍କୃତିକ ମହୋତ୍ସବ-୨୦୦୭ରେ ଚେନ୍ନାଇଠାରେ ତାମିଲନାଡୁର ରାଜ୍ୟପାଳ ଶ୍ରୀ ସୁରଜିତ୍ ସିଂ ବର୍ଣ୍ଣାଲା ଓଡ଼ିଶା ସିନେକ୍ରିଟିକ୍ ଆସୋସିଏସନର ସଂପାଦକ ଦିଲ୍ଲୀପ୍ ହାଲିଙ୍କୁ ସମ୍ମାନିତ କରୁଛନ୍ତି । ରାଜ୍ୟ ସୂଚନା ଓ ଲୋକ ସଂପର୍କ ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ଓ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଉପସ୍ଥିତ ଅଛନ୍ତି । ୨୬.୦୯.୦୭

ସତୁରୀ ଦଶକର ମଧ୍ୟଭାଗରେ ମାଡ୍ରାସ ଚିତ୍ର ନିର୍ମାତାମାନଙ୍କ ଚଳଚ୍ଚିତ୍ର 'ପୁନର୍ମିଳନ', 'ଏ ନୁହେଁ କାହାଣୀ', 'କୁଳଚନ୍ଦ୍ରମା', 'ପରିବାର', 'ଝିଲିମିଲି', 'ଜନ୍ମଦାତା', 'ପତିପତ୍ନୀ', 'ସତୀ ଅନୁସୟା' ଆଦି ଦର୍ଶକମାନଙ୍କୁ ବିଶେଷ ଆମୋଦିତ କରିଥିଲା । ମାଡ୍ରାସର ଚିତ୍ର ନିର୍ମାତାମାନେ ଓଡ଼ିଆ କଳାକାରମାନଙ୍କୁ ଅଭିନୟ ବାବଦକୁ ଆଶାତୀତ ଅର୍ଥ ପ୍ରଦାନ ଚିତ୍ର ଜଗତରେ ଚର୍ଚ୍ଚାର ବିଷୟ ହୋଇଥିଲା । ଏଭଳି ସୁସ୍ଥ ପରମ୍ପରାକୁ ଲକ୍ଷ୍ୟ କରି ଓଡ଼ିଶାର ପ୍ରଯୋଜକମାନେ ହତୋତ୍ସାହିତ ହେଲେ । ଶେଷରେ ଏଥିନେଇ ବିବାଦ ଉପୁଜିଥିଲା । ଏପରି ବାତାବରଣ ଯୋଗୁଁ ମାଡ୍ରାସର ଚିତ୍ର ନିର୍ମାତାମାନେ ଆଉ ଚିତ୍ର କରିବାକୁ ମନ ବଳାଇଲେ ନାହିଁ । ସେବେଠୁଁ କଳାକାରମାନେ ଆର୍ଥିକ ଦିଗରେ ଏଯାବତ୍ ସୁସ୍ଥ ହୋଇପାରୁନାହାନ୍ତି । ଅଥଚ ମାଡ୍ରାସ, ବମ୍ବେର କୁକୁର, ମାଙ୍କଡ଼, ସାପ ଆଦି ଓଡ଼ିଆ ଚିତ୍ରରେ ଅଭିନୟ କରି ଓଡ଼ିଶାର କଳାକାରମାନଙ୍କଠାରୁ ପାରିଶ୍ରମିକ ବାବଦରେ ଅଧିକ ଅର୍ଥ ପାଇଥାଆନ୍ତି । ଅଣ ଓଡ଼ିଆ - ଓଡ଼ିଆ ମନାନ୍ତର ଯୋଗୁଁ ଓଡ଼ିଆ ଚିତ୍ର ଜଗତରେ ଶିଥିଳତା ଦେଖାଦେଲା । ୯୦ ଦଶକରେ ଓଡ଼ିଆ ପ୍ରଯୋଜକମାନେ ମାଡ୍ରାସ ଚିତ୍ରରୁ ଓଡ଼ିଆ ରୂପାନ୍ତରକୁ ଗୁରୁତ୍ୱ ଦେବା ଫଳରେ 'ନାଗପଞ୍ଚମୀ' ଚିତ୍ର କୋଟିଏ ଟଙ୍କାରୁ ଊର୍ଦ୍ଧ୍ୱ ବ୍ୟବସାୟିକ ସଫଳତା ଲାଭ କରିପାରିଥିଲା ।

୭୦ ବର୍ଷର ସଂଗୀତ ଜଗତରେ କେତୋଟି ପୁରୁଣା ଚିତ୍ରକୁ ବାଦ ଦେଲେ ଅନ୍ୟାନ୍ୟ ଓଡ଼ିଆ ଚିତ୍ରର ଗୀତଗୁଡ଼ିକ ବ୍ୟବସାୟିକ କ୍ଷେତ୍ରରେ ସେପରି ଫଳପ୍ରଦ ହେଉନଥିଲା । ୧୯୭୫ ପରେ ମମତା, ଯାଯାବର, ଉଲକା, ସିନ୍ଦୂରବିନ୍ଦୁ, ଚିହ୍ନା ଅଚିହ୍ନା, ଆରତୀ, ସଉତୁଣୀ, ଶେଷ ଶ୍ରାବଣ, ସ୍ୱପ୍ନସାଗର ଆଦି ଚିତ୍ରର ଗୀତଗୁଡ଼ିକ ଆଜି ବି ଚଳଚ୍ଚିତ୍ର ଜଗତରେ ଶ୍ରୋତାମାନଙ୍କ ମନରେ ଛାପ ହୋଇ ରହିଛି । ଏହି ଚିତ୍ର ପରେ ଅନ୍ୟାନ୍ୟ ଯେତେଗୁଡ଼ିଏ ଚଳଚ୍ଚିତ୍ର ଏ ଯାବତ୍ ମୁକ୍ତି ପ୍ରାପ୍ତ ହୋଇଛି ସେସବୁର ଗୋଟିଏ କିମ୍ବା ଦୁଇଟି ଗୀତକୁ ଛାଡ଼ି ଦେଲେ ପ୍ରାୟତଃ ଗୀତ ଶ୍ରୋତାମାନଙ୍କ ମନରେ ସ୍ମରଣୀୟ ହୋଇ ରହୁନାହିଁ କି, ସେପରି ବ୍ୟବସାୟିକ ସଫଳତା ପାଇପାରୁନାହିଁ । ଓଡ଼ିଆ ଚିତ୍ରର ସଂଗୀତ କ୍ଷେତ୍ରରେ ଯଦି ବିଚାର କରାଯାଏ, ତାହାହେଲେ, ପୁରୁଣା ଗୀତର ଗୀତିକାର ଓ ସଂଗୀତ ନିର୍ଦ୍ଦେଶକମାନଙ୍କର ସ୍ୱର ସଂଯୋଜନା ଗୁରୁତ୍ୱପୂର୍ଣ୍ଣ ଥିଲା । ସେ ସମୟରେ ଅଡ଼ିଓ କ୍ୟାସେଟର ପ୍ରସାର ନଥିଲା । ରେକର୍ଡ଼ ମାଧ୍ୟମରେ ଗୀତଗୁଡ଼ିକ ଶ୍ରୋତାମାନଙ୍କ କାନରେ ଯାହା ଶୁଣିବାକୁ ମିଳୁଥିଲା । ବର୍ତ୍ତମାନ ଅଡ଼ିଓ କ୍ୟାସେଟ୍‌ରେ ବହୁଳ ପ୍ରସାର ସାଙ୍ଗକୁ ଓଡ଼ିଆ ଚଳଚ୍ଚିତ୍ରରେ ହିନ୍ଦୀ ଚିତ୍ରର ଅନୁକରଣରେ ଗୀତଗୁଡ଼ିକର ଚାହିଦା ବୃଦ୍ଧି ପାଇଛି । ସଂଗୀତ ନିର୍ଦ୍ଦେଶକମାନେ ନିଜସ୍ୱ ରୁଚିବୋଧ ଉପରେ ସ୍ୱର କରୁନାହାନ୍ତି । ଫଳରେ ଗୀତଗୁଡ଼ିକରେ ସେପରି ପ୍ରଭାବ ନଥିବା ଯୋଗୁଁ ତାହା ଶ୍ରୋତାମାନଙ୍କ ମନରେ ଛାପ ହୋଇ ରହୁ ନାହିଁ ।

ଓଡ଼ିଆ ଚଳଚ୍ଚିତ୍ରରେ ଯେଉଁ ପରିମାଣରେ ବିକାଶ ଘଟିଛି, ଚଳଚ୍ଚିତ୍ର ସାମ୍ବାଦିକତାରେ ମଧ୍ୟ ସେଇ ପରିମାଣରେ ମାନବୃଦ୍ଧି ପାଇଛି । ଓଡ଼ିଆ ଚିତ୍ର ସାମ୍ବାଦିକତାକୁ ପେଷା କରିଥିବା ଆଙ୍ଗୁଠି ଗଣତି ସାମ୍ବାଦିକ ସାଲିସ୍ ନକରି ନିଜ ନିଜର ବକ୍ତବ୍ୟ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ କରିଥାନ୍ତି । ୧୯୪୨ ମସିହାରେ ପ୍ରଥମ ଚଳଚ୍ଚିତ୍ର ପତ୍ରିକା 'ଚିତ୍ରଲେଖା' ଲକ୍ଷ୍ମୀଧର ନାୟକଙ୍କ ସମ୍ପାଦନାରେ ପ୍ରକାଶ ପାଇଥିଲ । ୧୯୮୪ ମସିହାରେ 'ସିନେ ସମ୍ବାଦ' ଓଡ଼ିଆ ଚିତ୍ର ଜଗତରେ ନୂତନ ଦିଗ୍‌ଦର୍ଶନ ଦେବାରେ ସହାୟକ ହେଲା ।

୭୧ ବର୍ଷରେ ଓଡ଼ିଶା ସିନେକ୍ରିଟିକ୍ ଆସୋସିଏସନ୍‌ର ଭୂମିକା ଉଲ୍ଲେଖନୀୟ । ସରକାରଙ୍କୁ ଚଳଚ୍ଚିତ୍ର ସଂପର୍କରେ ସୁବିଧା ଅସୁବିଧା ସମ୍ପର୍କରେ ଅବଗତ କରାଇ କାର୍ଯ୍ୟ କରିବାରେ ସିନେକ୍ରିଟିକ୍‌ର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏହା ୨୫ ବର୍ଷର ସରକାରୀ ସ୍ୱୀକୃତି ପ୍ରାପ୍ତ ସଂଗଠନ । ଏତଦ୍‌ବ୍ୟତୀତ ଓଡ଼ିଶାରେ ଟେକ୍‌ନିସିଆନ ସଂଘ, ପ୍ରଯୋଜକ ସଂଘ, ବିତରକ ସଂଘ ଓ କଳାକାର ସଂଘ ଅଛି । ଓଡ଼ିଆ ଚଳଚ୍ଚିତ୍ରରେ ଟେକ୍‌ନିସିଆନଙ୍କ ଆଗମନ ଫଳରେ ଓଡ଼ିଆ ଚିତ୍ର ଆତ୍ମନିର୍ଭରଶୀଳ ହୋଇଛି ସତ କିନ୍ତୁ ଆତ୍ମସନ୍ତୋଷ ପାଇବା ପାଇଁ ଆହୁରି ଅନେକ ଦିନ ବାକି ରହିଛି । ଓଡ଼ିଆ ଦର୍ଶକ ରୁଚିବୋଧର ଅନେକ ପରିବର୍ତ୍ତନ ଇତି ମଧ୍ୟରେ ଘଟିଛି । ଗଣମାଧ୍ୟମରେ ଦୃଢ଼ ଅଗ୍ରଗତି ଦର୍ଶକଙ୍କୁ ଖୋରାକ ଯୋଗାଇଛି । ଓଡ଼ିଆ ଚିତ୍ରକୁ ଯାହା କଲେ ଦର୍ଶକ ଗ୍ରହଣ କରିନେବେ ଏଭଳି ଚିନ୍ତାଧାରା ପ୍ରଯୋଜକ ନିର୍ଦ୍ଦେଶକ ତଥା ଟେକ୍‌ନିସିଆନମାନଙ୍କ ମନରେ ରହିବା ଉଚିତ୍ ନୁହେଁ । ଓଡ଼ିଆ ଚଳଚ୍ଚିତ୍ର ଉନ୍ନୟନ ନିଗମ ମଧ୍ୟ ଓଡ଼ିଆ ଚଳଚ୍ଚିତ୍ର ଓ ପ୍ରେକ୍ଷାଳୟର ବିକାଶ ଦିଗରେ ଉଦ୍ୟମ ଜାରି ରଖିଛି ।

ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ ପକ୍ଷରୁ ଓଡ଼ିଆ ଚଳଚ୍ଚିତ୍ର ଓ ସାଂସ୍କୃତିକ ମହୋତ୍ସବ ରାଜ୍ୟ ବାହାରେ ପ୍ରତିବର୍ଷ ହେବା ନିମନ୍ତେ ବ୍ୟବସ୍ଥା ହେଉଛି । ତଦ୍ୱାରା ଚଳଚ୍ଚିତ୍ର ପ୍ରଯୋଜକ ଓ କଳାକାରମାନଙ୍କୁ ଉତ୍ସାହିତ କରିବା ସହ ରାଜ୍ୟ ରାଜ୍ୟ ମଧ୍ୟରେ ସାଂସ୍କୃତିକ ଭାବ ବିନିମୟ ରକ୍ଷା ହୋଇପାରୁଛି । ୨୦୦୩ରେ କେରଳ, ୨୦୦୫ରେ ଗୋଆ ଓ ୨୦୦୬ରେ ମୁମ୍ବାଇରେ, ୨୦୦୭ ବର୍ଷରେ ବାଙ୍ଗାଲୋର ଓ ତାମିଲନାଡୁଠାରେ ଏଭଳି ଉତ୍ସବର ଆୟୋଜନ ରାଜ୍ୟ ସରକାରଙ୍କର ଏକ ଉଲ୍ଲେଖନୀୟ ପଦକ୍ଷେପ ।

କଳିଙ୍ଗ ଷ୍ଟୁଡ଼ିଓରେ ପ୍ରଥମ ପୂର୍ଣ୍ଣାଙ୍ଗ ଚଳଚ୍ଚିତ୍ର 'ପରଝିଅ ଘର ଭାଙ୍ଗେନା' ୧୯୮୨ ଜୁଲାଇ ୨୦ରେ ଶୁଭ ମହୁରତ୍ ଉତ୍ସବ ହୋଇଥିଲା । ଏହି ଚିତ୍ରର ନିର୍ଦ୍ଦେଶକ ଥିଲେ ରମେଶ ମହାନ୍ତି । ଶୁଭ ମହୁରତ୍‌ରେ ବିଶିଷ୍ଟ କଳା ନିର୍ଦ୍ଦେଶକ ଅସୀମ ବସୁ ଏହାର ଶୁଭାରମ୍ଭ କରିଥିଲେ । ଷ୍ଟୁଡ଼ିଓ ହେଲା ପରେ ମାଡ୍ରାସ, ବମ୍ବେ ଯିବା କିଛିଦିନ ପାଇଁ ବନ୍ଦ ହେଲା ସତ କିନ୍ତୁ ଅନେକ ପ୍ରଯୋଜକ ଗୁଣାତ୍ମକ ମାନ ପାଇଁ ଏବେବି ବମ୍ବେ, ମାଡ୍ରାସ ଦୌଡ଼ ଅବ୍ୟାହତ ରଖିଛନ୍ତି । ଆଗାମୀ ଦିନରେ କଳିଙ୍ଗ ଷ୍ଟୁଡ଼ିଓର ରକ୍ଷଣାବେକ୍ଷଣ ପାଇଁ ସଚେତନତା ସୃଷ୍ଟି ଏକାନ୍ତ ଅପରିହାର୍ଯ୍ୟ ମନେହୁଏ । ଓଡ଼ିଆ ଚଳଚ୍ଚିତ୍ର ପାଇଁ ବେସରକାରୀ ଉଦ୍ୟମରେ ପ୍ରତିଷ୍ଠିତ ଡାଇନାମିକ୍ ଷ୍ଟୁଡ଼ିଓର କାର୍ଯ୍ୟଦକ୍ଷତା ଅତ୍ୟନ୍ତ ପ୍ରଶଂସନୀୟ । ସୁଧାଂଶୁ ରଥଙ୍କ ଉଦ୍ୟମ ସେ ଦିଗରେ ଗୁରୁତ୍ୱପୂର୍ଣ୍ଣ ।

ଓଡ଼ିଆ ଚଳଚ୍ଚିତ୍ରର ଉନ୍ନତି ପାଇଁ ସବୁସ୍ତରରେ ଅର୍ଥାତ୍ ସରକାରୀ ଓ ବେସରକାରୀ ଉଦ୍ୟମ ହେଉ ।

ବଡ଼ଗଡ଼
ଭୁବନେଶ୍ୱର-୧୮

# ସାଧାରଣତନ୍ତ୍ର

ରତ୍ନାକର ରାଉତ

ମୋତେ ଯେଉଁ ନାମରେ ଡାକିବ ଡାକ
ମୋତେ ଯେଉଁ ଉପାଧି ଦେବ ଦିଅ
ତୁମ ମନକୁ ଯାହା ଛୁଉଁଛି
ସେହି ଭାବରେ ସମ୍ବୋଧନ କର
କିମ୍ବା ମୋ' ଶରୀରର ଆକୃତିକୁ ବର୍ଣ୍ଣନା କରି
ମୋର ଗୋଟେ ପରିଚୟ ସୃଷ୍ଟି କର
ଅଥବା ଘର, ଗାଡ଼ି, ରାସ୍ତାପରି
ମୋତେ କେଉଁ ଗୋଟେ ସଂଖ୍ୟାରେ ଚିହ୍ନଟ କର
ସେଥିରେ ମୋର କିଛି ଯାଏ ଆସେ ନାହିଁ
କାରଣ ମୁଁ ମୋର ପରିଚୟ ନୁହେଁ
ସେସବୁ ପରିଚୟ ମୋର ଏହି ଶରୀରର ।
ଅନେକ ଦିନ ବିଶ୍ରାମ ପରେ ମୁଁ ବାହୁଡ଼ିଛି
ଏବେ ଏହି ଶରୀରରେ ମୋର ଅବସ୍ଥାନ
ଭିନ୍ନ ଭିନ୍ନ କାର୍ଯ୍ୟରେ ଏବେ ବ୍ୟସ୍ତ ମୋ' ଶରୀର
ସୀମିତ ସମୟ ମଧ୍ୟରେ ଅସୁମାରି
ଅନୁଭବକୁ ଆଦରି ନେବାର ପ୍ରଲୋଭନ ତା'ର
ଗଳଦଘର୍ମ ଦଉଡ଼, ବସ୍ତୁର ମୋହରେ ସେ ମୁହ୍ୟମାଣ ।
ଅପେକ୍ଷାରେ ଅପେକ୍ଷାରେ ବିତୁଛି ମୋର ସମୟ
ସକଳ ଇନ୍ଦ୍ରିୟ ଉନ୍ମୁଖ, ଉଚ୍ଚାଟିତ
ଅନ୍ତର୍ମୁଖୀ ଚେତନାର ଅବବୋଧ ଭିତରେ
ସ୍ଥୂଳରୁ ସୂକ୍ଷ୍ମର ଅନୁଭବ କାହିଁ ?
ସବୁ ବିସ୍ମରି ଯାଇଛି ଏ ଶରୀର,
ମୁଁ କିଏ, କାହିଁକି ମୋର ଆଗମନ
ଏବଂ ଏହି କ୍ଷୟଶୀଳ ଶରୀରରେ ଅବସ୍ଥାନ ?
କେବେ ବାହାରୁ ଦୃଷ୍ଟି ପ୍ରସାରିତ ହେବ ଭିତରକୁ
ଅନେଇ ଅନେଇ ମୁଁ କ୍ଳାନ୍ତ ଓ ବିଷର୍ଣ୍ଣ ।
ଅନେକ ଥକି ପଡ଼ିଲିଣି
ଏବେ ବାହୁଡ଼ିଯିବା ଆସନ୍ନ, ବିଶ୍ରାମର ବେଳ
ଶରୀର ମ୍ରିୟମାଣ, ଜରାବ୍ୟାଧିରେ ଶୀର୍ଣ୍ଣ
ତଥାପି ଆଣ୍ଠ ଯାଉନି, ସେ ଲୋଡୁଛି
ନୂଆ ନୂଆ ଭାବ, ଅନୁଭବ
ସ୍ୱପ୍ନ ସରୁନି, ବିଭୋର କରୁଛି ସ୍ୱପ୍ନାଛନ୍ନ ମନ
କେବେ ସଫଳ ହେବ ଆମ ସାଧାରଣତନ୍ତ୍ର ?

କ୍ୱା.ନଂ.-୩ ଆର୍-୧୪/୨
ୟୁନିଟ୍-୪, ଭୁବନେଶ୍ୱର-୧

୭୧ ବର୍ଷରେ ଓଡ଼ିଶା ସିନେଟ୍ରିକ୍ ଆସୋସିଏସନ୍‌ର ଭୂମିକା ଉଲ୍ଲେଖନୀୟ । ସରକାରଙ୍କୁ ଚଳଚ୍ଚିତ୍ର ସଂପର୍କରେ ସୁବିଧା ଅସୁବିଧା ସମ୍ପର୍କରେ ଅବଗତ କରାଇ କାର୍ଯ୍ୟ କରିବାରେ ସିନେଟ୍ରିକ୍‌ର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏହା ୨୫ ବର୍ଷର ସରକାରୀ ସ୍ୱୀକୃତି ପ୍ରାପ୍ତ ସଂଗଠନ । ଏତଦ୍‌ବ୍ୟତୀତ ଓଡ଼ିଶାରେ ଟେକ୍‌ନିସିଆନ ସଂଘ, ପ୍ରଯୋଜକ ସଂଘ, ବିତରକ ସଂଘ ଓ କଳାକାର ସଂଘ ଅଛି । ଓଡ଼ିଆ ଚଳଚ୍ଚିତ୍ରରେ ଟେକ୍‌ନିସିଆନଙ୍କ ଆଗମନ ଫଳରେ ଓଡ଼ିଆ ଚିତ୍ର ଆତ୍ମନିର୍ଭରଶୀଳ ହୋଇଛି ସତ କିନ୍ତୁ ଆତ୍ମସନ୍ତୋଷ ପାଇବା ପାଇଁ ଆହୁରି ଅନେକ ଦିନ ବାକି ରହିଛି । ଓଡ଼ିଆ ଦର୍ଶକ ରୁଚିବୋଧର ଅନେକ ପରିବର୍ତ୍ତନ ଇତି ମଧ୍ୟରେ ଘଟିଛି । ଗଣମାଧ୍ୟମରେ ଦୃଢ଼ ଅଗ୍ରଗତି ଦର୍ଶକଙ୍କୁ ଖୋରାକ ଯୋଗାଇଛି । ଓଡ଼ିଆ ଚିତ୍ରକୁ ଯାହା କଲେ ଦର୍ଶକ ଗ୍ରହଣ କରିନେବେ ଏଭଳି ଚିନ୍ତାଧାରା ପ୍ରଯୋଜକ ନିର୍ଦ୍ଦେଶକ ତଥା ଟେକ୍‌ନିସିଆନମାନଙ୍କ ମନରେ ରହିବା ଉଚିତ୍ ନୁହେଁ । ଓଡ଼ିଆ ଚଳଚ୍ଚିତ୍ର ଉନ୍ନୟନ ନିଗମ ମଧ୍ୟ ଓଡ଼ିଆ ଚଳଚ୍ଚିତ୍ର ଓ ପ୍ରେକ୍ଷାଳୟର ବିକାଶ ଦିଗରେ ଉଦ୍ୟମ ଜାରି ରଖିଛି ।

ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ ପକ୍ଷରୁ ଓଡ଼ିଆ ଚଳଚ୍ଚିତ୍ର ଓ ସାଂସ୍କୃତିକ ମହୋତ୍ସବ ରାଜ୍ୟ ବାହାରେ ପ୍ରତିବର୍ଷ ହେବା ନିମନ୍ତେ ବ୍ୟବସ୍ଥା ହେଉଛି । ତଦ୍ୱାରା ଚଳଚ୍ଚିତ୍ର ପ୍ରଯୋଜକ ଓ କଳାକାରମାନଙ୍କୁ ଉତ୍ସାହିତ କରିବା ସହ ରାଜ୍ୟ ରାଜ୍ୟ ମଧ୍ୟରେ ସାଂସ୍କୃତିକ ଭାବ ବିନିମୟ ରକ୍ଷା ହୋଇପାରୁଛି । ୨୦୦୩ରେ କେରଳ, ୨୦୦୫ରେ ଗୋଆ ଓ ୨୦୦୬ରେ ମୁମ୍ବାଇରେ, ୨୦୦୭ ବର୍ଷରେ ବାଙ୍ଗାଲୋର ଓ ତାମିଲନାଡୁଠାରେ ଏଭଳି ଉତ୍ସବର ଆୟୋଜନ ରାଜ୍ୟ ସରକାରଙ୍କର ଏକ ଉଲ୍ଲେଖନୀୟ ପଦକ୍ଷେପ ।

କଳିଙ୍ଗ ଷ୍ଟୁଡ଼ିଓରେ ପ୍ରଥମ ପୂର୍ଣ୍ଣାଙ୍ଗ ଚଳଚ୍ଚିତ୍ର 'ପରଝିଅ ଘର ଭାଙ୍ଗେନା' ୧୯୮୨ ଜୁଲାଇ ୨୦ରେ ଶୁଭ ମହୁରତ୍ ଉତ୍ସବ ହୋଇଥିଲା । ଏହି ଚିତ୍ରର ନିର୍ଦ୍ଦେଶକ ଥିଲେ ରମେଶ ମହାନ୍ତି । ଶୁଭ ମହୁରତ୍‌ରେ ବିଶିଷ୍ଟ କଳା ନିର୍ଦ୍ଦେଶକ ଅସୀମ ବସୁ ଏହାର ଶୁଭାରମ୍ଭ କରିଥିଲେ । ଷ୍ଟୁଡ଼ିଓ ହେଲା ପରେ ମାଡ୍ରାସ, ବମ୍ବେ ଯିବା କିଛିଦିନ ପାଇଁ ବନ୍ଦ ହେଲା ସତ କିନ୍ତୁ ଅନେକ ପ୍ରଯୋଜକ ଗୁଣାତ୍ମକ ମାନ ପାଇଁ ଏବେବି ବମ୍ବେ, ମାଡ୍ରାସ ଦୌଡ଼ ଅବ୍ୟାହତ ରଖିଛନ୍ତି । ଆଗାମୀ ଦିନରେ କଳିଙ୍ଗ ଷ୍ଟୁଡ଼ିଓର ରକ୍ଷଣାବେକ୍ଷଣ ପାଇଁ ସଚେତନତା ସୃଷ୍ଟି ଏକାନ୍ତ ଅପରିହାର୍ଯ୍ୟ ମନେହୁଏ । ଓଡ଼ିଆ ଚଳଚ୍ଚିତ୍ର ପାଇଁ ବେସରକାରୀ ଉଦ୍ୟମରେ ପ୍ରତିଷ୍ଠିତ ଡାଇନାମିକ୍ ଷ୍ଟୁଡ଼ିଓର କାର୍ଯ୍ୟଦକ୍ଷତା ଅତ୍ୟନ୍ତ ପ୍ରଶଂସନୀୟ । ସୁଧାଂଶୁ ରଥଙ୍କ ଉଦ୍ୟମ ସେ ଦିଗରେ ଗୁରୁତ୍ୱପୂର୍ଣ୍ଣ ।

ଓଡ଼ିଆ ଚଳଚ୍ଚିତ୍ରର ଉନ୍ନତି ପାଇଁ ସବୁସ୍ତରରେ ଅର୍ଥାତ୍ ସରକାରୀ ଓ ବେସରକାରୀ ଉଦ୍ୟମ ହେଉ ।

ବଡ଼ଗଡ଼
ଭୁବନେଶ୍ୱର-୧୮

# ସାଧାରଣତନ୍ତ୍ର

ରତ୍ନାକର ରାଉତ

ମୋତେ ଯେଉଁ ନାମରେ ଡାକିବ ଡାକ
ମୋତେ ଯେଉଁ ଉପାଧି ଦେବ ଦିଅ
ତୁମ ମନକୁ ଯାହା ଛୁଉଁଛି
ସେହି ଭାବରେ ସମ୍ବୋଧନ କର
କିମ୍ବା ମୋ' ଶରୀରର ଆକୃତିକୁ ବର୍ଣ୍ଣନା କରି
ମୋର ଗୋଟେ ପରିଚୟ ସୃଷ୍ଟି କର
ଅଥବା ଘର, ଗାଡ଼ି, ରାସ୍ତାପରି
ମୋତେ କେଉଁ ଗୋଟେ ସଂଖ୍ୟାରେ ଚିହ୍ନଟ କର
ସେଥିରେ ମୋର କିଛି ଯାଏ ଆସେ ନାହିଁ
କାରଣ ମୁଁ ମୋର ପରିଚୟ ନୁହେଁ
ସେସବୁ ପରିଚୟ ମୋର ଏହି ଶରୀରର ।
ଅନେକ ଦିନ ବିଶ୍ରାମ ପରେ ମୁଁ ବାହୁଡ଼ିଛି
ଏବେ ଏହି ଶରୀରରେ ମୋର ଅବସ୍ଥାନ
ଭିନ୍ନ ଭିନ୍ନ କାର୍ଯ୍ୟରେ ଏବେ ବ୍ୟସ୍ତ ମୋ' ଶରୀର
ସୀମିତ ସମୟ ମଧ୍ୟରେ ଅସୁମାରି
ଅନୁଭବକୁ ଆଦରି ନେବାର ପ୍ରଲୋଭନ ତା'ର
ଗଳଦଘର୍ମ ଦଉଡ଼, ବସ୍ତୁର ମୋହରେ ସେ ମୁହ୍ୟମାଣ ।

ଅପେକ୍ଷାରେ ଅପେକ୍ଷାରେ ବିତୁଛି ମୋର ସମୟ
ସକଳ ଇନ୍ଦ୍ରିୟ ଉନ୍ମୁଖ, ଉଚ୍ଚାଟିତ
ଅନ୍ତର୍ମୁଖୀ ଚେତନାର ଅବବୋଧ ଭିତରେ
ସ୍ଥୂଳରୁ ସୂକ୍ଷ୍ମର ଅନୁଭବ କାହିଁ ?
ସବୁ ବିସ୍ମରି ଯାଇଛି ଏ ଶରୀର,
ମୁଁ କିଏ, କାହିଁକି ମୋର ଆଗମନ
ଏବଂ ଏହି କ୍ଷୟଶୀଳ ଶରୀରରେ ଅବସ୍ଥାନ ?
କେବେ ବାହାରୁ ଦୃଷ୍ଟି ପ୍ରସାରିତ ହେବ ଭିତରକୁ
ଅନେଇ ଅନେଇ ମୁଁ କ୍ଲାନ୍ତ ଓ ବିଷର୍ଣ୍ଣ ।
ଅନେକ ଥକି ପଡ଼ିଲିଣି
ଏବେ ବାହୁଡ଼ିଯିବା ଆସନ୍ନ, ବିଶ୍ରାମର ବେଳ
ଶରୀର ମ୍ରିୟମାଣ, ଜରାବ୍ୟାଧିରେ ଶୀର୍ଣ୍ଣ
ତଥାପି ଆଣ୍ଠ ଯାଉନି, ସେ ଲୋଡୁଛି
ନୂଆ ନୂଆ ଭାବ, ଅନୁଭବ
ସ୍ୱପ୍ନ ସରୁନି, ବିଭୋର କରୁଛି ସ୍ୱପ୍ନାଚ୍ଛନ୍ନ ମନ
କେବେ ସଫଳ ହେବ ଆମ ସାଧାରଣତନ୍ତ୍ର ?

କ୍ୱା.ନଂ.-୩ ଆର୍-୧୪/୨
ୟୁନିଟ୍-୪, ଭୁବନେଶ୍ୱର-୧

# ଦକ୍ଷିଣ ଓଡ଼ିଶାରେ ସମ୍ବାଦପତ୍ରର ଜନକ ଶଶିଭୂଷଣ ରଥ

ଡକ୍ଟର ପ୍ରଦୀପ ମହାପାତ୍ର

**ଦ**କ୍ଷିଣ ଓଡ଼ିଶାରୁ ଶଶିଭୂଷଣ ରଥ ପ୍ରଥମେ ଓଡ଼ିଆ ଦୈନିକ ସମ୍ବାଦପତ୍ର 'ଦୈନିକ ଆଶା' ୧୯୨୮ ମସିହାରେ ପ୍ରକାଶନ କରି ଗୌରବର ଅଧିକାରୀ ହୋଇଛନ୍ତି । ୧୯୧୩ ମସିହାରୁ ବ୍ରହ୍ମପୁରରୁ କ୍ରମାଗତ ଭାବେ ପ୍ରକାଶିତ ହୋଇ ଆସୁଥିବା ସାପ୍ତାହିକ 'ଆଶା' ଦୈନିକ ସମ୍ବାଦପତ୍ରରେ ପ୍ରବର୍ତ୍ତିତ ହେବାପରେ ୧୯୫୧ ମସିହା ଯାଏଁ ପ୍ରକାଶିତ ହୋଇ ଆସୁଥିଲା । ୧୯୪୩ ମସିହାରେ ଶଶିଭୂଷଣ ରଥଙ୍କ ପରଲୋକ ଘଟିଥିଲା ଏବଂ ତତ୍‌ପରବର୍ତ୍ତୀ ଆଠ ବର୍ଷ ଅନିୟମିତ ଭାବେ ଏହାର ପ୍ରକାଶନ ଜାରି ରହିଥିଲା । ୧୯୮୨ ମସିହାରେ 'ଦୈନିକ ଆଶା' ତୃତୀୟପକ୍ଷଙ୍କ ମାଲିକାନାରେ ପ୍ରକାଶନ ଆରମ୍ଭ କଲା ।



ଶଶିଭୂଷଣ ରଥଙ୍କ ତିନି ଦଶନ୍ଧିର ସାମ୍ବାଦିକ ଜୀବନ ଓଡ଼ିଆ ପତ୍ରପତ୍ରିକା ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ । ସେ ୧୯୨୨ ମସିହାରେ 'ଇଷ୍ଟକୋଷ୍ଟ' ନାମକ ଏକ ଇଂଲିଶ ସାପ୍ତାହିକ, ୧୯୩୩ ମସିହାରେ 'ନିଉ ଓଡ଼ିଶା' ନାମକ ଏକ ଇଂଲିଶ ଦୈନିକ ଓ ୧୯୧୭ ମସିହାରେ 'ପ୍ରଦୀପ' ନାମରେ ଏକ ଓଡ଼ିଆ ସାହିତ୍ୟ ପତ୍ରିକାର ପ୍ରକାଶନ ଆରମ୍ଭ କରିଥିଲେ । ୧୯୧୭ ମସିହାରୁ ୧୯୧୯ ମସିହା ଯାଏଁ ଦୁଇ ବର୍ଷ ପ୍ରକାଶନ ପରେ 'ପ୍ରଦୀପ'ର ପ୍ରକାଶନ ପରବର୍ତ୍ତୀ ପାଞ୍ଚ ବର୍ଷ ବନ୍ଦ ରହିଥିଲା ଏବଂ ପୁଣି ୧୯୨୪ ମସିହାରୁ ୧୯୨୬ ମସିହା ଯାଏଁ ଦୁଇ ବର୍ଷ ପୁନଃ ପ୍ରକାଶିତ ହୋଇଥିଲା । ସାପ୍ତାହିକ 'ଇଷ୍ଟକୋଷ୍ଟ' ଏକ ପ୍ରକାରେ ଦୈନିକ 'ନିଉ ଓଡ଼ିଶା'ରେ ପରିବର୍ତ୍ତିତ ହେବାପରେ 'ଦୈନିକ ଆଶା' ସହ ୧୯୫୧ ମସିହା ଯାଏଁ ଅନିୟମିତ ଭାବେ ପ୍ରକାଶ ପାଇ ଆସୁଥିଲା । 'ଦୈନିକ ଆଶା'ର ଆତ୍ମପ୍ରକାଶ ପରେ ସାପ୍ତାହିକ 'ଆଶା'ର ପ୍ରକାଶନ ବନ୍ଦ ରହି ୧୯୩୯ ମସିହାରେ 'ଆଶା' ପ୍ରେସ କଟକ ସ୍ଥାନାନ୍ତରିତ ହେବାପରେ ପୁଣି ବ୍ରହ୍ମପୁରରେ ନବପ୍ରତିଷ୍ଠିତ 'ଶଶିଭୂଷଣ ପ୍ରେସ୍'ରୁ ପ୍ରକାଶ ପାଇଥିଲା । ଶଶିଭୂଷଣଙ୍କ ପରଲୋକ ଗମନର କିଛିକାଳ ପରେ ଏହାର ପ୍ରକାଶନ ବନ୍ଦ ହୋଇଯାଇଥିଲା ।

ଶଶିଭୂଷଣ ରଥ ୨୭ ବର୍ଷ ବୟସରେ ବ୍ରହ୍ମପୁରରେ ପହଞ୍ଚି ସମ୍ବାଦପତ୍ର ପ୍ରକାଶନର ପରିକଳ୍ପନା କରିଥିଲେ । ୧୯୦୨ ମସିହାରେ ପାରଳାଖେମୁଣ୍ଡି ଉଚ୍ଚ ବିଦ୍ୟାଳୟରୁ ସେ ମାଟ୍ରିକ୍ ପାଶ୍ କରିବାପରେ ୧୯୦୫ ମସିହାରେ ମୁମ୍ବାଇରେ ପହଞ୍ଚି ଚମଡ଼ା ବ୍ୟବସାୟରେ ସଂପୃକ୍ତ ହୋଇଥିଲେ । ୧୯୦୮ ମସିହାରେ କାମଳ ରୋଗାକ୍ରାନ୍ତ ହୋଇ ନିଜ ଗ୍ରାମ ସୋରଡ଼ାକୁ ଫେରିବାପରେ କଟକରେ ମଧୁସୂଦନ ଦାସଙ୍କ 'ଉତ୍କଳ ଟାନେରୀ'ରେ ବର୍ଷେ କଟାଇ କୋଲକତା ଯାଇ ଔଷଧ ବ୍ୟବସାୟ କରିଥିଲେ । ସେଠାରେ ଶାନ୍ତିନିକେତନରେ ଅଧ୍ୟୟନରତ ସତ୍ୟବାଦୀ ଗୋଷ୍ଠୀର ନୀଳକଣ୍ଠ ଦାଶ, କୃପାସିନ୍ଧୁ ମିଶ୍ର ଓ ଗୋଦାବରୀଶ ମିଶ୍ର ପ୍ରମୁଖଙ୍କସହ ଶଶିଭୂଷଣଙ୍କ ପରିଚୟ ହୋଇଥିଲା । ଓଡ଼ିଆ ସଂଗଠନ ତଥା ସ୍ୱାଧୀନତା ସଂଗ୍ରାମର ଦୀକ୍ଷା ସେ କୋଲକତାରେ ହିଁ ଗ୍ରହଣ କରିଥିଲେ । ୧୯୧୨ ମସିହାରେ ବ୍ରହ୍ମପୁର ଫେରିବାପରେ ସଂସ୍କାରକ ଶ୍ରୀବତ୍ସ ପଣ୍ଡା, ଆଇନଜୀବୀ ହରିହର ପଣ୍ଡା ଓ ଆଦିସାମ୍ବାଦିକ ନୀଳମଣି ବିଦ୍ୟାରତ୍ନ ଶଶିଭୂଷଣଙ୍କୁ ସମ୍ବାଦପତ୍ର ପ୍ରକାଶନ କରିବା ନିମନ୍ତେ ପ୍ରୋତ୍ସାହିତ କରିଥିଲେ । ନୀଳମଣି ବିଦ୍ୟାରତ୍ନ ଦେବଗଡ଼ରୁ 'ସମ୍ବଲପୁର ହିତୈଷିଣୀ', ଗଞ୍ଜାମର ଖଲ୍ଲିକୋଟରୁ 'ପ୍ରଜାବନ୍ଧୁ' ଓ ବଡ଼ଖେମୁଣ୍ଡିରୁ 'ଗଞ୍ଜାମ ଗୁଣଦର୍ପଣ' ଦୀର୍ଘକାଳ ଧରି ସଂପାଦନା କରିଥିଲେ । ଓଡ଼ିଆ ଭାଷାଭାଷୀଙ୍କ ସ୍ୱାର୍ଥ ସୁରକ୍ଷାଲାଗି ବ୍ରହ୍ମପୁରରୁ ସ୍ୱାଧୀନ ପରିଚାଳନାରେ ସମ୍ବାଦପତ୍ର ପ୍ରକାଶନର ଜରୁରୀ ଆବଶ୍ୟକତା ଥିବା ହେତୁ ଶଶିଭୂଷଣଙ୍କ ଭଳି ବଳିଷ୍ଠ ବ୍ୟକ୍ତିତ୍ୱ ଏଭଳି ଗୁରୁଦାୟିତ୍ୱ ବହନ କରିବାକୁ ସମର୍ଥ ହେବେ ବୋଲି ସେମାନଙ୍କ ହୃଦ୍‌ବୋଧ ହୋଇଥିଲା । ବିନା ପୁଞ୍ଜି, ବିନା ଯୋଜନାରେ କେବଳ ସ୍ଥାନୀୟ ନେତୃସ୍ଥାନୀୟ ବ୍ୟକ୍ତିବିଶେଷଙ୍କ ପ୍ରେରଣାରେ ଶଶିଭୂଷଣ ସାପ୍ତାହିକ 'ଆଶା'ର ପ୍ରକାଶନ ଆରମ୍ଭ କରିଥିଲେ ।

ଠିକ୍ ସେହିପରି ୫୮ ବର୍ଷରେ ତାଙ୍କରି ପରଲୋକ ଘଟିବା ବେଳକୁ 'ଦୈନିକ ଆଶା', 'ନିଉ ଓଡ଼ିଶା' ଓ ସାପ୍ତାହିକ 'ଆଶା'ର

ଭବିଷ୍ୟତ ପ୍ରକାଶନ ଲାଗି ମଧ ଶଶିଭୂଷଣଙ୍କ କୌଣସି ବିଧିବଦ୍ଧ ଯୋଜନା ନଥିଲା । ଯେଉଁ ୧୫ ଜଣ କମ୍ପୋଜିଟର ମେସିନ୍‌ମେନଙ୍କୁ ନେଇ ତାଙ୍କରି ମୁଦ୍ରଣାଳୟ ଆରମ୍ଭ ହୋଇଥିଲା ତାହାର କର୍ମଚାରୀ ସଂଖ୍ୟା ୪୦କୁ ବୃଦ୍ଧି ପାଇଥିଲା । ସମ୍ବାଦପତ୍ରର ପରିଚାଳନାଭାର ଉତ୍ତରାଧିକାରୀଭାବେ ତାଙ୍କର ଧର୍ମପତ୍ନୀ ଅନ୍ନପୂର୍ଣ୍ଣା ଦେବୀ ଗ୍ରହଣ କରିଥିଲେ ଏବଂ ତାଙ୍କରି ପ୍ରତିନିଧିଭାବେ ଏକମାତ୍ର ଜାମାତା ଡାକ୍ତର ବଳଭଦ୍ର ମିଶ୍ର ଦେଖାଶୁଣା କଲେ । ଡାକ୍ତର ମିଶ୍ର ଜଣେ ସରକାରୀ କର୍ମଚାରୀ । ସେ ପତ୍ରିକା ଚଳାଇବା ସମ୍ଭବପର ନ ହେବାରୁ ଶିଳ୍ପପତି ମଦନଲାଲ ଯାଜୋଡ଼ିଆ ପ୍ରକାଶନ ସ୍ୱତ୍ତ୍ୱ ଓ ମୁଦ୍ରଣାଳୟ କିଣି ନେଲେ । ତେବେ ଉପଯୁକ୍ତ ଯତ୍ନ ଅଭାବରୁ ପତ୍ରିକା ଦୁଇଟି ବନ୍ଦ ହୋଇଗଲା ।

ଶଶିଭୂଷଣଙ୍କୁ ସମ୍ବାଦପତ୍ର ପ୍ରକାଶନ କ୍ଷେତ୍ରରେ ବ୍ରହ୍ମପୁର ନିକଟସ୍ଥ ନିମଖଣ୍ଡିର ବ୍ୟବସାୟୀ ପରମାନନ୍ଦ ସାହୁ, ଧରାକୋଟର ରାଜା ମଦନମୋହନ ସିଂହଦେଓ, ଚିକିଟି ରାଜା ରାଧାମୋହନ ରାଜେନ୍ଦ୍ର ଦେବ, ସୁରଙ୍ଗୀ ରାଜା ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନ ପ୍ରମୁଖ ପୃଷ୍ଠପୋଷକ ଭାବେ ସାହାଯ୍ୟ କରୁଥିଲେ । ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାଶ, ଗୋଦାବରୀଶ ମିଶ୍ର, ଲିଙ୍ଗରାଜ ପାଣିଗ୍ରାହୀ, ଶ୍ୟାମସୁନ୍ଦର ମିଶ୍ର, ଫକୀରମୋହନ ସେନାପତି, ଗୋପାଳଚନ୍ଦ୍ର ପ୍ରହରାଜ, କପିଳେଶ୍ୱର ଦାସ, ସତ୍ୟନାରାୟଣ ରାଜଗୁରୁ, ଜଗବନ୍ଧୁ ସିଂହ, ଅନନ୍ତ ମିଶ୍ର, ରାମଚନ୍ଦ୍ର ଆଚାର୍ଯ୍ୟ, ସଦାଶିବ ବିଦ୍ୟାଭୂଷଣ, ସତ୍ୟ ନାରାୟଣ ପଣ୍ଡା, ଗଦାଧର ବିଦ୍ୟାଭୂଷଣ, ଆପନ୍ନା ପରିଚ୍ଛା, ବିକ୍ରମ ଦେବବର୍ମା ପ୍ରମୁଖ 'ଆଶା' ଓ 'ଦୈନିକ ଆଶା'ରେ ନିୟମିତ ଭାବେ ଲେଖୁଥିଲେ । ଗୋଦାବରୀଶ ମହାପାତ୍ର, ନିତ୍ୟାନନ୍ଦ ମହାପାତ୍ର, ଚିନ୍ତାମଣି ମିଶ୍ର, ଶରତଚନ୍ଦ୍ର ମହାପାତ୍ର, ଚନ୍ଦ୍ରଶେଖର ମହାପାତ୍ର, ନୀଳକଣ୍ଠ ମିଶ୍ର, ମହେନ୍ଦ୍ର ପଟ୍ଟନାୟକ, ଗୋବିନ୍ଦ ମିଶ୍ର, ରାମପ୍ରସାଦ ସିଂ, ଜୟମଙ୍ଗଳ ରଥ, ରମେଶ ମହାନ୍ତି, ଈଶ୍ୱର ସାହୁ, ଶ୍ରୀହର୍ଷ ମିଶ୍ର ଓ ରାମଚନ୍ଦ୍ର ଦାଶ ପ୍ରମୁଖ ବିଭିନ୍ନ ସମୟରେ ଏହାର ସଂପାଦନା କାର୍ଯ୍ୟ କରିଥିଲେ ।

୧୯୧୨ରୁ ୧୯୩୯ ମସିହା ମଧ୍ୟରେ ବ୍ରହ୍ମପୁରଠାରେ 'ଆଶା' ପ୍ରେସ୍‌ରେ ୨୭ ବର୍ଷ ଧରି ଛୋଟ ବଡ଼ ବହୁ ଓଡ଼ିଆ ପୁସ୍ତକ ମୁଦ୍ରିତ ହୋଇଥିଲା । ଓଡ଼ିଆ ଭାଷା ସାହିତ୍ୟର ସୁରକ୍ଷା ଓ ପ୍ରସାର ଦିଗରେ ଏହି ପ୍ରକାଶନଗୁଡ଼ିକର ଗୁରୁତ୍ୱପୂର୍ଣ୍ଣ ଭୂମିକା ଅନସ୍ୱୀକାର୍ଯ୍ୟ । ୧୯୧୫ ମସିହାରେ ଏଠାରୁ ପଞ୍ଚସଖା ପ୍ରଣୋଦିତ 'ସତ୍ୟବାଦୀ' ପତ୍ରିକା ମୁଦ୍ରିତ ହୋଇ ପ୍ରକାଶ ପାଇଥିଲା । 'ସତ୍ୟବାଦୀ' ପତ୍ରିକା ହିଁ ପରବର୍ତ୍ତେ ଅବସ୍ଥାରେ ସାପ୍ତାହିକ ଓ ଦୈନିକ 'ସମାଜ'ର ପ୍ରକାଶନ ନିମନ୍ତେ ଭିତ୍ତିଭୂମି ପ୍ରସ୍ତୁତ କରିଥିଲା । ସେହିପରି ୧୯୩୮ ମସିହାରେ ଗୋଦାବରୀଶ ମହାପାତ୍ରଙ୍କ 'ନିଆଁଖୁଣ୍ଟା' 'ଆଶା' ପ୍ରେସ୍‌ରୁ ମୁଦ୍ରିତ ହୋଇ ଆତ୍ମପ୍ରକାଶ କରିଥିଲା । କିଛି କାଳପରେ 'ନିଆଁଖୁଣ୍ଟା' ଓଡ଼ିଆ ପତ୍ରିକା ଜଗତରେ ଅପ୍ରତିଦ୍ୱନ୍ଦ୍ୱୀ ପ୍ରକାଶନରେ ପରିଣତ ହୋଇଥିଲା । ଗୋଦାବରୀଶ ମିଶ୍ରଙ୍କ ସମ୍ପାଦନାରେ ସାପ୍ତାହିକ 'ଲୋକମତ' (୧୯୨୨) ମଧ ଦୁଇ ବର୍ଷ ଧରି 'ଆଶା' ପ୍ରେସ୍‌ରେ ମୁଦ୍ରିତ ହୋଇଥିଲା ।

ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଆନ୍ଦୋଳନରେ ଶଶିଭୂଷଣ ଓତଃପ୍ରୋତଃ ଭାବେ ଜଡ଼ିତ ଥିଲେ । କଂଗ୍ରେସପକ୍ଷରୁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦାବିପ୍ରତି ପ୍ରାଥମିକତା ଦିଆନଯାଉଥିବା ହେତୁ ସ୍ଥଳ ବିଶେଷରେ ସେ କେନ୍ଦ୍ରୀୟ କଂଗ୍ରେସ ନେତୃବର୍ଗଙ୍କ ବିରୋଧ କରିବାକୁ ପଛଘୁଞ୍ଚା ଦେଇନଥିଲେ । ୧୯୨୭ ମସିହାରେ ସାଇମନ କମିଶନମକୁ ଦେଶବ୍ୟାପୀ କଂଗ୍ରେସ ପକ୍ଷରୁ ବିରୋଧ କରାଯାଉଥିବା ବେଳେ 'ଉତ୍କଳ ସମ୍ମିଳନୀ'ର ନେତୃବର୍ଗଙ୍କ ସହ ଶଶିଭୂଷଣ କମିଶନ୍‌ଙ୍କ ନିକଟରେ ଭାଷାଭିତ୍ତିକ ସ୍ୱତନ୍ତ୍ର ରାଜ୍ୟ ଗଠନ ପ୍ରସ୍ତାବ ଉପସ୍ଥାପନ କରିଥିଲେ । ସେହିପରି ସ୍ୱତନ୍ତ୍ର ରାଜ୍ୟର ସୀମା ନିର୍ଦ୍ଧାରଣ ନିମନ୍ତେ ନିଯୁକ୍ତ ଓଡ଼ନେଲ କମିଟିକୁ ମଧ ପ୍ରଭାବିତ କରିବା ନିମନ୍ତେ ସେ ବହୁ କାର୍ଯ୍ୟକ୍ରମରେ ସାମିଲ ହୋଇଥିଲେ । ତେବେ ଓଡ଼ନେଲଙ୍କ ରିପୋର୍ଟରେ ପାରଳାଖେମୁଣ୍ଡି ଓ ଜୟପୁର ଜମିଦାରୀ ଅଞ୍ଚଳ ପ୍ରସ୍ତାବିତ ଓଡ଼ିଶା ରାଜ୍ୟରେ ସାମିଲ ହେବା କ୍ଷେତ୍ରରେ ନକରାତ୍ମକ ମନ୍ତବ୍ୟ ହେତୁ ଶଶିଭୂଷଣ ପୁଣି ଆନ୍ଦୋଳନାତ୍ମକ ପନ୍ଥା ଅବଲମ୍ବନ କରିଥିଲେ । ଓଡ଼ିଆମାନଙ୍କ ନ୍ୟାୟ୍ୟ ଦାବିକୁ ବ୍ରିଟିଶ ସରକାରଙ୍କ ସମ୍ମୁଖରେ ପ୍ରତିପାଦନ କରିବା ନିମନ୍ତେ ଦୈନିକ ଓଡ଼ିଆ ସମ୍ବାଦପତ୍ର ସହ ଏକ ଦୈନିକ ଇଂଲିଶ ସମ୍ବାଦପତ୍ର ମଧ ଆରମ୍ଭ କରିଥିଲେ ।

ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ପ୍ରଖରବେଳାରେ 'ଦୈନିକ ଆଶା' ଓ 'ସମାଜ' ଦୁଇଗୋଟି ମାତ୍ର ସମ୍ବାଦପତ୍ର ଜନଜାଗରଣର ଗୁରୁଦାୟିତ୍ୱ ବହନ କରିଥିଲେ । ସ୍ୱାଧୀନତା ପୂର୍ବବର୍ତ୍ତୀ ଅବସ୍ଥାରେ ମୋଟ ୮ ଗୋଟି ଓଡ଼ିଆ ଦୈନିକ ସମ୍ବାଦପତ୍ର ପ୍ରକାଶିତ ହୋଇଥିଲେ ହେଁ ପ୍ରଜାତନ୍ତ୍ର (୧୯୩୦), ପ୍ରଭାତ (୧୯୩୦), ଦେଶକଥା (୧୯୩୦), ଧର୍ମଦୂତ (୧୯୩୦), ନବଭାରତ (୧୯୩୪) ଓ ଜନତା (୧୯୪୦) ସ୍ୱଳ୍ପକାଳ ପାଇଁ ପ୍ରକାଶନ ଜାରି ରଖିଥିଲେ । ସାପ୍ତାହିକ 'ଆଶା' ୧୯୨୮ରେ 'ଦୈନିକ ଆଶା'ରେ ପରିବର୍ତ୍ତିତ ହେବା ଆଗରୁ କଂଗ୍ରେସ ନେତା ନିରଞ୍ଜନ ପଟ୍ଟନାୟକଙ୍କ ସମ୍ପାଦନାରେ 'ଗାନ୍ଧୀ ସମାଚାର' (୧୯୨୭)ରେ ମାତ୍ର ଦୁଇ ମାସ ପାଇଁ ବ୍ରହ୍ମପୁରରୁ ପ୍ରକାଶ ପାଇଥିଲା । ଏହା 'ଆଶା' ପ୍ରେସରେ ମୁଦ୍ରିତ ହେଉଥିଲା ଏବଂ ଶଶିଭୂଷଣ ରଥ ଏହା ମୁଦ୍ରଣ ଦାୟିତ୍ୱ ତଦାରଖ କରୁଥିଲେ । ଏହା କେବଳ ଗାନ୍ଧିଜୀଙ୍କ ଓଡ଼ିଶା ଗସ୍ତ ସମୟରେ କାର୍ଯ୍ୟକ୍ରମର ବିବରଣୀ ବହନ କରି ପ୍ରକାଶିତ ହୋଇଥିବା ହେତୁ 'ଗାନ୍ଧୀ ସମାଚାର'କୁ ଦୈନିକ ସମ୍ବାଦପତ୍ରର ମାନ୍ୟତା ଦିଆଯିବା ସମଚୀନ ନୁହେଁ ।

ଶଶିଭୂଷଣ କ୍ରମାଗତ ଭାବେ କଂଗ୍ରେସର ସ୍ୱାଧୀନତା ସଂଗ୍ରାମ ବାର୍ତ୍ତା ନିଜ ସମ୍ବାଦପତ୍ରରେ ପ୍ରକାଶନ କରୁଥିଲେ । ୧୯୩୦ ମସିହାରେ ଲବଣ ଆଇନ ଅମାନ୍ୟ ଆନ୍ଦୋଳନ ଅବସରରେ ନିରଞ୍ଜନ ପଟ୍ଟନାୟକଙ୍କଦ୍ୱାରା ପ୍ରକାଶିତ ଏକ ପ୍ରଚାରପତ୍ରର ମୁଦ୍ରକର ହିସାବରେ

ଦୋଷୀ ସାବ୍ୟସ୍ତ ହୋଇ ଆଠମାସ ବ୍ରହ୍ମପୁର ଓ ଭେଲୋର ଜେଲରେ ବନ୍ଦୀ ହୋଇଥିଲେ । ବ୍ରହ୍ମପୁର ପୌରପାଳିକା ଓ ମାନ୍ଦ୍ରାଜ ବିଧାନ ପରିଷଦରେ ପ୍ରତିନିଧିତ୍ୱ କରି ସ୍ଥାନୀୟ ଜନସାଧାରଣଙ୍କ ଅଭାବ ଅସୁବିଧା ଉପସ୍ଥାପିତ କରିଥିଲେ ।

ସମ୍ବାଦପତ୍ର ପ୍ରକାଶନ ସହ ସୋରଡ଼ାର ଶଶିଭୂଷଣଙ୍କ ପରିବାର ଓଡ଼ିଆ ଭାଷାରେ ମୁଦ୍ରଣ, ଟାଇପରାଇଟର ପ୍ରଚଳନ ଇତ୍ୟାଦି କ୍ଷେତ୍ରରେ ମଧ୍ୟ ପାରଦର୍ଶିତା ହାସଲ କରିଥିଲେ । ତାଙ୍କରି ଜନ୍ମଦାତା ପିତା ଲମ୍ବୋଦର ମହାପାତ୍ର ଓଡ଼ିଆ କମ୍ପୋଜିଟର୍ ଭାବେ ସରକାରଙ୍କ ଦ୍ୱାରା ନିର୍ବାଚିତ ହୋଇ ଚେନ୍ନାଇଠାରେ ତାଲିମ ଗ୍ରହଣ କରି ଆବଶ୍ୟକସ୍ଥଳେ ମୁଦ୍ରଣ କାର୍ଯ୍ୟରେ ନିୟୋଜିତ ହେଉଥିଲେ । ଶଶିଭୂଷଣଙ୍କ ସହୋଦର ଭ୍ରାତା ରଙ୍ଗନାଥ ମହାପାତ୍ର ଓଡ଼ିଆ ଟାଇପରାଇଟର ଉଦ୍‌ଭାବନ କରିଥିଲେ ।

ସାପ୍ତାହିକ 'ଆଶା' ଓ 'ଦୈନିକ ଆଶା' ଦୀର୍ଘକାଳ ଧରି ଓଡ଼ିଆ ଭାଷାଭାଷୀ ପାଠକଙ୍କ ମଧ୍ୟରେ ଆଦୃତ ହୋଇ ଆସିଥିଲା । ତତ୍କାଳୀନ ସଂବାଦପତ୍ର ପ୍ରକାଶନ ଧାରାରେ ପ୍ରଯୋଜନା ଓ ପ୍ରସାର କ୍ଷେତ୍ରରେ ଏହା ସଫଳ ହୋଇପାରିଥିଲା । ତେବେ ଶଶିଭୂଷଣଙ୍କଠାରେ ବ୍ୟବସାୟିକ ଦୂରଦୃଷ୍ଟି ଅଭାବ ହେତୁ ପରବର୍ତ୍ତୀ ଅବସ୍ଥାରେ ପ୍ରକାଶନ ସଂସ୍ଥାଟି ସ୍ୱାବଲମ୍ବୀ ହେବା ସମ୍ଭବପର ହୋଇପାରିଲା ନାହିଁ । ମୌଳିକ ଭାବେ ଶଶିଭୂଷଣ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ, ଦେଶକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତି, ସାମାଜିକ ଉନ୍ନୟନ ଭଳି ଆଦର୍ଶର ପ୍ରଚାର ଏବଂ ଜନସାଧାରଣଙ୍କ ବୃହତ୍ତର ସ୍ୱାର୍ଥରକ୍ଷା ଲାଗି ଲଢ଼େଇକୁ ଲକ୍ଷ୍ୟରଖି ସମ୍ବାଦପତ୍ର ପ୍ରକାଶନ କରୁଥିଲେ । ଅବଶ୍ୟ ସ୍ୱାଧୀନତା ପୂର୍ବବର୍ତ୍ତୀ ଅବସ୍ଥାରେ ଦେଶବ୍ୟାପୀ ସମ୍ବାଦପତ୍ର ପ୍ରକାଶନ ମୁଖ୍ୟତଃ ଆଦର୍ଶଭିତ୍ତିକ ରହି ଆସିଥିଲା ଏବଂ ଓଡ଼ିଆ ଦୈନିକ ସମ୍ବାଦପତ୍ରର ଜନକ ଶଶିଭୂଷଣ ରଥ ମଧ୍ୟ ଦେଶମାତୃକାର ସେବାରେ ନିଜ ଜୀବନ ଉତ୍ସର୍ଗ କରି ଦେଇଥିଲେ ।

ଅଧ୍ୟାପକ
ସ୍ନାତକୋତ୍ତର ଗଣଯୋଗାଯୋଗ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଞ୍ଜବିହାର, ବ୍ରହ୍ମପୁର-୭

---

# ତୁମ ଚିତାଭସ୍ମ ନାହିଁ

ଶକୁନ୍ତଳା ଆଚାର୍ଯ୍ୟ

ତୁମ ଚିତାଭସ୍ମ ସାଇତି ନାହାନ୍ତି
ତାମ୍ରପାତ୍ରରେ କେହି,
ତୁମ ଚିତାଭସ୍ମ ବିସର୍ଜି ନାହାନ୍ତି
ମହୋଦଧି ବକ୍ଷେ ନେଇ ।
ତୁମ ଚିତାଭସ୍ମ ଉଡ଼ାଜାହାଜରୁ
ପଡ଼ି ନାହିଁ ଧରା ତଳେ,
ତୁମ ଶବଧାରେ ପୁଷ୍ପମାଳ ଧରି-
ପିନ୍ଧାଇନି କିଏ ଗଳେ ।
'ଦିଲ୍ଲୀ ଚଲୋ' ବୋଲି ଡାକିଥିଲ ଦିନେ
କମ୍ପେ ଦିଲ୍ଲୀ ଦରବାର,
ଫିରିଙ୍ଗି ଶାସନ ଡରି ଯାଇଥିଲା
ଶୁଣି ତୁମରି ଚିତ୍କାର ।
ତୁମ ପୂତ କର୍ମ ବୀରତ୍ୱ କାହାଣୀ
ଇତିହାସେ ହେଲା ଲେଖା,
କେଉଁଠାରେ ସତେ ହେଲ ନିରୁଦ୍ଦିଷ୍ଟ
ପାଇଲେନି କେହି ଦେଖା ।



ଏ ମାଆ ଡାକୁଛି ଏ ଜାତି କାନ୍ଦୁଛି
ଏ ଦେଶ ଖୋଜଇ ଘୁରି,
ଚିହ୍ନ, ବର୍ଣ୍ଣ-କିଛି ନ ମିଳିଲା ଖାଲି
ସବୁଠି ଶୁଭିଲା ହୁରି ।
ଦେଶର ପିତା ମହାତ୍ମା ଗାନ୍ଧୀଙ୍କ
ଅହିଂସା ପଥ ଭୁଲି,
ତମେ ବାଛି ନେଲ ଭିନ୍ନ ଏକ ପଥ
ନଯିବାକୁ ପଥ ହୁଡ଼ି ।
ଉଠି ପଡ଼ ମୋର ଏ ଦେଶ ଦାୟାଦ
ଚକ୍ଷୁ ଖୋଲି ଥରେ ଦେଖ,
ବହୁଦୂରେ ଥାଇ ନେତାଜୀଙ୍କ ଥରେ
ଦେଉଥାନ୍ତି ତାଙ୍କ ଡାକ ।

ମାର୍ଫତ : ବ୍ରଜବନ୍ଧୁ ଆଚାର୍ଯ୍ୟ
ଖାକିମଠ ସାହି, ପୁରୀ-୨

ଦୋଷୀ ସାବ୍ୟସ୍ତ ହୋଇ ଆଠମାସ ବ୍ରହ୍ମପୁର ଓ ଭେଲୋର ଜେଲରେ ବନ୍ଦୀ ହୋଇଥିଲେ । ବ୍ରହ୍ମପୁର ପୌରପାଳିକା ଓ ମାନ୍ଦ୍ରାଜ ବିଧାନ ପରିଷଦରେ ପ୍ରତିନିଧିତ୍ୱ କରି ସ୍ଥାନୀୟ ଜନସାଧାରଣଙ୍କ ଅଭାବ ଅସୁବିଧା ଉପସ୍ଥାପିତ କରିଥିଲେ ।

ସମ୍ବାଦପତ୍ର ପ୍ରକାଶନ ସହ ସୋରଡ଼ାର ଶଶିଭୂଷଣଙ୍କ ପରିବାର ଓଡ଼ିଆ ଭାଷାରେ ମୁଦ୍ରଣ, ଟାଇପରାଇଟର ପ୍ରଚଳନ ଇତ୍ୟାଦି କ୍ଷେତ୍ରରେ ମଧ୍ୟ ପାରଦର୍ଶିତା ହାସଲ କରିଥିଲେ । ତାଙ୍କରି ଜନ୍ମଦାତା ପିତା ଲମ୍ବୋଦର ମହାପାତ୍ର ଓଡ଼ିଆ କମ୍ପୋଜିଟର୍ ଭାବେ ସରକାରଙ୍କ ଦ୍ୱାରା ନିର୍ବାଚିତ ହୋଇ ଚେନ୍ନାଇଠାରେ ତାଲିମ ଗ୍ରହଣ କରି ଆବଶ୍ୟକସ୍ଥଳେ ମୁଦ୍ରଣ କାର୍ଯ୍ୟରେ ନିୟୋଜିତ ହେଉଥିଲେ । ଶଶିଭୂଷଣଙ୍କ ସହୋଦର ଭ୍ରାତା ରଙ୍ଗନାଥ ମହାପାତ୍ର ଓଡ଼ିଆ ଟାଇପରାଇଟର ଉଦ୍‌ଭାବନ କରିଥିଲେ ।

ସାପ୍ତାହିକ 'ଆଶା' ଓ 'ଦୈନିକ ଆଶା' ଦୀର୍ଘକାଳ ଧରି ଓଡ଼ିଆ ଭାଷାଭାଷୀ ପାଠକଙ୍କ ମଧ୍ୟରେ ଆଦୃତ ହୋଇ ଆସିଥିଲା । ତତ୍କାଳୀନ ସଂବାଦପତ୍ର ପ୍ରକାଶନ ଧାରାରେ ପ୍ରଯୋଜନା ଓ ପ୍ରସାର କ୍ଷେତ୍ରରେ ଏହା ସଫଳ ହୋଇପାରିଥିଲା । ତେବେ ଶଶିଭୂଷଣଙ୍କଠାରେ ବ୍ୟବସାୟିକ ଦୂରଦୃଷ୍ଟି ଅଭାବ ହେତୁ ପରବର୍ତ୍ତୀ ଅବସ୍ଥାରେ ପ୍ରକାଶନ ସଂସ୍ଥାଟି ସ୍ୱାବଲମ୍ବୀ ହେବା ସମ୍ଭବପର ହୋଇପାରିଲା ନାହିଁ । ମୌଳିକ ଭାବେ ଶଶିଭୂଷଣ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ, ଦେଶକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତି, ସାମାଜିକ ଉନ୍ନୟନ ଭଳି ଆଦର୍ଶର ପ୍ରଚାର ଏବଂ ଜନସାଧାରଣଙ୍କ ବୃହତ୍ତର ସ୍ୱାର୍ଥରକ୍ଷା ଲାଗି ଲଢ଼େଇକୁ ଲକ୍ଷ୍ୟରଖି ସମ୍ବାଦପତ୍ର ପ୍ରକାଶନ କରୁଥିଲେ । ଅବଶ୍ୟ ସ୍ୱାଧୀନତା ପୂର୍ବବର୍ତ୍ତୀ ଅବସ୍ଥାରେ ଦେଶବ୍ୟାପୀ ସମ୍ବାଦପତ୍ର ପ୍ରକାଶନ ମୁଖ୍ୟତଃ ଆଦର୍ଶଭିତ୍ତିକ ରହି ଆସିଥିଲା ଏବଂ ଓଡ଼ିଆ ଦୈନିକ ସମ୍ବାଦପତ୍ରର ଜନକ ଶଶିଭୂଷଣ ରଥ ମଧ୍ୟ ଦେଶମାତୃକାର ସେବାରେ ନିଜ ଜୀବନ ଉତ୍ସର୍ଗ କରି ଦେଇଥିଲେ ।

ଅଧ୍ୟାପକ
ସ୍ନାତକୋତ୍ତର ଗଣଯୋଗାଯୋଗ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ଭଞ୍ଜବିହାର, ବ୍ରହ୍ମପୁର-୭

---

# ତୁମ ଚିତାଭସ୍ମ ନାହିଁ

ଶକୁନ୍ତଳା ଆଚାର୍ଯ୍ୟ

ତୁମ ଚିତାଭସ୍ମ ସାଇତି ନାହାନ୍ତି
ତାମ୍ରପାତ୍ରରେ କେହି,
ତୁମ ଚିତାଭସ୍ମ ବିସର୍ଜି ନାହାନ୍ତି
ମହୋଦଧି ବକ୍ଷେ ନେଇ ।
ତୁମ ଚିତାଭସ୍ମ ଉଡ଼ାଜାହାଜରୁ
ପଡ଼ି ନାହିଁ ଧରା ତଳେ,
ତୁମ ଶବଧାରେ ପୁଷ୍ପମାଳ ଧରି-
ପିନ୍ଧାଇନି କିଏ ଗଳେ ।
'ଦିଲ୍ଲୀ ଚଲୋ' ବୋଲି ଡାକିଥିଲ ଦିନେ
କମ୍ପେ ଦିଲ୍ଲୀ ଦରବାର,
ଫିରିଙ୍ଗି ଶାସନ ଡରି ଯାଇଥିଲା
ଶୁଣି ତୁମରି ଚିତ୍କାର ।
ତୁମ ପୂତ କର୍ମ ବୀରତ୍ୱ କାହାଣୀ
ଇତିହାସେ ହେଲା ଲେଖା,
କେଉଁଠାରେ ସତେ ହେଲ ନିରୁଦ୍ଦିଷ୍ଟ
ପାଇଲେନି କେହି ଦେଖା ।



ଏ ମାଆ ଡାକୁଛି ଏ ଜାତି କାନ୍ଦୁଛି
ଏ ଦେଶ ଖୋଜଇ ଘୁରି,
ଚିହ୍ନ, ବର୍ଣ୍ଣ-କିଛି ନ ମିଳିଲା ଖାଲି
ସବୁଠି ଶୁଭିଲା ହୁରି ।
ଦେଶର ପିତା ମହାତ୍ମା ଗାନ୍ଧୀଙ୍କ
ଅହିଂସା ପଥ ଭୁଲି,
ତମେ ବାଛି ନେଲ ଭିନ୍ନ ଏକ ପଥ
ନଯିବାକୁ ପଥ ଛୁଡ଼ି ।
ଉଠି ପଡ଼ ମୋର ଏ ଦେଶ ଦାୟାଦ
ଚକ୍ଷୁ ଖୋଲି ଥରେ ଦେଖ,
ବହୁଦୂରେ ଥାଇ ନେତାଜୀଙ୍କ ଥରେ
ଦେଉଥାନ୍ତି ତାଙ୍କ ଡାକ ।

ମାର୍ଫତ : ବ୍ରଜବନ୍ଧୁ ଆଚାର୍ଯ୍ୟ
ଖାକିମଠ ସାହି, ପୁରୀ-୨



ଜୟୀ ରାଜଗୁରୁ

ଭାରତୀୟ ପ୍ରଥମ
ସ୍ୱାଧୀନତା ସଂଗ୍ରାମର
୧୫୦ ବର୍ଷ
ପୂର୍ତ୍ତି ଉପଲକ୍ଷେ
ସ୍ୱତନ୍ତ୍ର ପୃଷ୍ଠା



ବିର୍ସା ମୁଣ୍ଡା



ସିପାହୀ ବିଦ୍ରୋହ : ୧୮୫୭



ଚାଖି ଖୁଣ୍ଟିଆ



ବୀର ସୁରେନ୍ଦ୍ର ସାଏ

## ୧୮୫୭ ସିପାହୀ ବିଦ୍ରୋହର ବିଭିନ୍ନ କେନ୍ଦ୍ରସ୍ଥଳୀ







ଭାରତରେ ପ୍ରଥମ ସ୍ୱାଧୀନତା ସଂଗ୍ରାମର ସାଂକେତିକ ଚିହ୍ନ

୧୮୫୭ - ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମର ବର୍ଷ

୧୯୦୭ - ଶହୀଦ ଭଗତ ସିଂଙ୍କ ଜନ୍ମ ସମ୍ବତ୍ସର

୧୯୪୭ - ଭାରତର ସ୍ୱାଧୀନତା ସମ୍ବତ୍ସର

୨୦୦୭ - ଏହି ସମସ୍ତ ସମ୍ବତ୍ସରର ପୂର୍ତ୍ତି ଉତ୍ସବ

# ଓଡ଼ିଶାର ପ୍ରଥମ ସ୍ୱାଧୀନତା ସଂଗ୍ରାମୀ

ଗଙ୍ଗୋତ୍ରୀ ଦେବୀ

**ସ**ମୟ ନଦୀର ଉଜାଣି ସୁଅ କେତେ କେତେ ଘଟଣା ଦୁର୍ଘଟଣାକୁ ତା'ର ଉତ୍ତାଳ ବକ୍ଷରେ ଭସାଇ ନେଇ ଯାଉଛି, ତା'ର ଇୟତା ନାହିଁ । କଥାରେ ଅଛି, 'ଦିନ ଯାଏ, ଚିହ୍ନ ରହେ ।' ସେହିଭଳି ସମୟ ସ୍ରୋତରେ କାଠି, କୁଟା, ପତର ଭଳି ଭାସି ଯାଉ ଯାଉ କେତେ ଘଟଣା ନଦୀପାର୍ଶ୍ୱର କେଉଁଠି ନା କେଉଁଠି ଲବେ ଅଟକି ଯାଆନ୍ତି । ଆଉ ପାଲଟି ଯାଆନ୍ତି ଇତିହାସ । ଯେଉଁ ଇତିହାସ ପରବର୍ତ୍ତୀ ପିଢ଼ିକୁ ଯୋଗାଇଥାଏ ପ୍ରେରଣା, ମନରେ ଭରି ଦେଇଥାଏ ଉନ୍ମାଦନା ଓ ଜାଗ୍ରତ କରିଥାଏ ଗଭୀର ଆତ୍ମ ବିଶ୍ୱାସ । ଇତିହାସ ଜଣାଇଥାଏ ସେହି ମହାନ୍ ଦେଶପ୍ରେମୀମାନଙ୍କର ଲହୁ ଲୁହର ବ୍ୟଞ୍ଜନା ସମଗ୍ର ଜାତିକୁ । ନିର୍ମୋଘ ବିମଳ ସନ୍ଧ୍ୟାର ଗଗନରେ ଉଜ୍ଜ୍ୱଳ ତାରକାଟି ଭଳି ଝଲସି ଉଠନ୍ତି ସେହି ଦିବଂଗତ ଦେଶପ୍ରେମୀଗଣ ଜନତାଙ୍କ ମନ ଆକାଶରେ । ଏହିଭଳି ଜଣେ ଜଣେ ଦେଶପ୍ରେମୀ, ପ୍ରଥମ ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଧ୍ୟରେ ଅନ୍ୟତମ ବୀର ସୁରେନ୍ଦ୍ର ସାଏ, ବକ୍ସି ଜଗବନ୍ଧୁ ବିଦ୍ୟାଧର ଓ ଜୟୀ ରାଜଗୁରୁ ।

ଜନ୍ମ ଏବଂ ମରଣ । ଏ ଦୁହେଁ ଦୁଇଟିର ପରିପୂରକ । କେବଳ ଶତବର୍ଷ ବଞ୍ଚି ରହିବାର ମାନେ ଜୀବନ ନୁହେଁ । ବରଂ ମୁହୂର୍ତ୍ତଟିଏ ବଞ୍ଚି ରହି ଜାତିପାଇଁ ଜୀବନ ଉତ୍ସର୍ଗ କରୁଥିବା ମଣିଷ ମରି ମଧ୍ୟ ମରଣଜୟୀ ହୋଇଥାଆନ୍ତି । ସେହିଭଳି ଜଣେ ଯୋଗଜନ୍ମା ପୁରୁଷ ଥିଲେ 'ଜୟୀ ରାଜଗୁରୁ' ।

୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନଙ୍କ ଦ୍ୱାରା ଓଡ଼ିଶା ଅଧିକୃତ ହୋଇଥିଲା । ସେହି ଅଧିକାର ଓଡ଼ିଶାର ଜନସାଧାରଣ ତଥା ଖୋର୍ଦ୍ଧା ରାଜା ମୁକୁନ୍ଦ ଦେବଙ୍କୁ ଗାଦିଚ୍ୟୁତ କରିଥିଲା । କ୍ୟାନ୍ସର ରୋଗର ଜୀବାଣୁ ଭଳି ଇଂରେଜ ବାହିନୀ ଓଡ଼ିଶାର ପ୍ରତିଟି ରାଜ୍ୟର ରାଜାଙ୍କୁ ଗାଦିଚ୍ୟୁତ କରାଇ ନିଜର ଅଧୀନରେ ରଖିଥିଲା ଓ ଯିଏ ଏହାର ଖିଲାପ କରୁଥିଲେ, ସେମାନଙ୍କୁ ବିଭିନ୍ନ ପ୍ରକାର ନିର୍ଯ୍ୟାତନାର ସମ୍ମୁଖୀନ ହେବାକୁ ପଡୁଥିଲା । ଏହି ଅତ୍ୟାଚାରର ସମ୍ମୁଖୀନ ହେଉଥିଲେ ନିରୀହ ଓଡ଼ିଶାବାସୀ । ଇଂରେଜ ଶାସନ କାଳରେ ଲୋକମାନଙ୍କର ଦୁଃଖଦୁର୍ଦ୍ଦଶା ଓ ଅତ୍ୟାଚାରର ଦୃଢ଼ ପ୍ରତିବାଦ କରିଥିଲେ ଖୋର୍ଦ୍ଧା ରାଜାଙ୍କର ପାରମ୍ପରିକ ପୁରୋହିତ ଜୟକୃଷ୍ଣ ରାଜଗୁରୁ ଓରଫ୍ 'ଜୟୀ ରାଜଗୁରୁ' ।

ସାରା ଓଡ଼ିଶାର ରାଜାମାନଙ୍କ ମଧ୍ୟରୁ ଗଜପତି ପଦରେ ଅଭିମଣ୍ଡିତ ହୋଇଥିଲେ ଖୋର୍ଦ୍ଧା ରାଜା । ପୁରୁଷାନୁକ୍ରମେ ଖୋର୍ଦ୍ଧାଗଡ଼ର ରାଜା ଗଜପତି ମୁକୁନ୍ଦ ଦେବ ନାବାଳକ ଥିବାରୁ ତାଙ୍କ ତରଫରୁ ରାଜାଙ୍କ କୁଳ ପୁରୋହିତ ଜୟୀ ରାଜଗୁରୁ ରାଜ୍ୟ ଚଳାଉଥିଲେ ।

ଇଂରେଜ ଶାସକ ମୁକୁନ୍ଦ ଦେବଙ୍କ ନିକଟକୁ ଏକ ପତ୍ର ପ୍ରେରଣ ପୂର୍ବକ ସେଥିରେ ଏକ ଚୁକ୍ତିପତ୍ର ସଂଯୋଗ କରିଥିଲେ ଓ ସେଥିରେ ଲେଖାଥିଲା - 'ଇଂରେଜ ସରକାର ଖୋର୍ଦ୍ଧାର ଅଧିକାରୀ ହେବେ ଓ ମୁକୁନ୍ଦ ଦେବ ତାଙ୍କ ଅଧୀନରେ ରାଜ୍ୟ ଚଳାଇବେ । ରାଜା ବାର୍ଷିକ ଖଜଣା ଦେବେ ବୋଲି ମଧ୍ୟ ଉଲ୍ଲେଖ ଥିଲା ।' ଏହା ପଢ଼ି ଜୟୀ ରାଜଗୁରୁ ରାଗିଗଲେ । ଏହା ଗଜପତିଙ୍କ ପ୍ରତି ଏକ ପତ୍ର ନଥିଲା ବରଂ ସମ୍ମାନହାନୀର ବାହକ ଥିଲା । ଏପରି ପତ୍ରକୁ ସ୍ୱୀକାର କରିବା ଅର୍ଥ ଗଜପତିଙ୍କୁ ଇଂରେଜ ଆଗରେ ସଖୀ କଣ୍ଢେଇ ଭଳି ଚଳିବାକୁ ହେବ । ଏହା ଚିନ୍ତାକରି ରାଜଗୁରୁ ଗର୍ଜନ କଲେ - 'ଗଜପତି ଫିରିଙ୍ଗି ଶାସକର ଗୋଲାମ ହେବେ, ଅସମ୍ଭବ ! ଏ ଚୁକ୍ତିପତ୍ରରେ ସ୍ୱୀକାର କରାଯିବ ନାହିଁ ।'

ଚୁକ୍ତିପତ୍ର ଫେରିଗଲା । ଆହତ ବ୍ୟାଘ୍ର ଭଳି ଇଂରେଜ ଅଧିକାରୀ ରୋଷଦୀପ୍ତ କଣ୍ଠରେ ଆଦେଶ ଦେଲେ, ଜୟୀ ରାଜଗୁରୁ ଶୀଘ୍ର ତାଙ୍କ ସହିତ ସାକ୍ଷାତ କରୁ । ମାତ୍ର ଯିଏ ଜନ୍ମଭୂମିର ଅମର୍ଯ୍ୟାଦାକୁ କୌଣସିମତେ ସହ୍ୟ କରିପାରୁ ନଥିଲେ, ସେ କିପରି ବିଦେଶୀ ଶକ୍ତି ଆଗରେ ମୁଣ୍ଡ ନୋଇଁବେ ?

ପରାଧୀନତାର ଶୃଙ୍ଖଳରୁ ଦେଶ ସମେତ ରାଜ୍ୟକୁ ରକ୍ଷା କରିବା ପାଇଁ ଓଡ଼ିଶାର ବୀର ପାଇକମାନେ ଇଂରେଜ ଶକ୍ତି ବିରୁଦ୍ଧରେ ଏକ ଐତିହାସିକ ବିଦ୍ରୋହ କରିଥିଲେ । କେବଳ ଖୋର୍ଦ୍ଧାର ପାଇକମାନେ ନୁହନ୍ତି, ଏହି ଆନ୍ଦୋଳନରେ ଝାସ ଦେଇଥିଲେ ଢେଙ୍କାନାଳ, ସମ୍ବଲପୁର,

ଗଞ୍ଜାମ, ରସୁଲକୁଣ୍ଡା, କୁଜଙ୍ଗ, ରଙ୍ଗେଇଲୁଣ୍ଡା, କନିକା ଆଦି ବୀର ପାଇକଗଣ । ରାଜଗୁରୁ ଖୋର୍ଦ୍ଧା ବାହିନୀର ସେନାପତି ହେଲେ । ତାଙ୍କର ଗୁରୁ ଗମ୍ଭୀର ନିର୍ଦ୍ଦେଶରେ ପାଇକ ବାହିନୀ ହାତରେ ଖଣ୍ଡା, ବର୍ଛା, ଢାଲ ଆଦି ହାତହତିଆର ଧରି ଯୁଦ୍ଧ କ୍ଷେତ୍ରକୁ ଡେଇଁ ପଡ଼ିଲେ । ମେଜର ଫ୍ଲେଚର ଇଂରେଜ ବାହିନୀର ଚାଳକ ଥିଲେ । ଇଂରେଜ ବାହିନୀଙ୍କ ଗୁଳିଗୋଳା ତୋପ କମାଣର ପ୍ରଚଣ୍ଡ ଆକ୍ରମଣକୁ ପ୍ରତିରୋଧ କରିଥିଲେ ଦୁର୍ଦ୍ଧର୍ଷ ପାଇକବାହିନୀ । ମନରେ ଅଦମ୍ୟ ସାହସ, ସ୍ୱପ୍ନ ଥିଲା ମାତୃଭୂମିକୁ ଶତ୍ରୁ ହାତରୁ ବଞ୍ଚାଇବା ତଥା ଉପଯୁକ୍ତ ସେନାପତିଙ୍କ ପ୍ରେରଣା ବୀର ପାଇକମାନଙ୍କର ଏକାନ୍ତ ସମ୍ବଳ ଥିଲା । ପ୍ରତ୍ୟକ୍ଷ ଯୁଦ୍ଧରେ କେତେଥର ପାଇକମାନେ ଜୟଲାଭ କଲେ । ମାତ୍ର ଗୁଳିଗୋଳା ଆଗରେ ତୀର, ଖଣ୍ଡାର ପତନ ହୋଇଥିଲା ।

ଗଜପତି ମୁକୁନ୍ଦ ଦେବ ଇଂରେଜଙ୍କ ଦ୍ୱାରା କଟକରେ ଅଟକ ବନ୍ଦୀ ରହିଲେ । ସେନାପତି ଜୟୀ ରାଜଗୁରୁ ଆତ୍ମଗୋପନ କଲେ । ଇଂରେଜମାନେ ଥିଲେ ଅତି ଚତୁର । ସେମାନେ ରାତି ରାତି କେତେଜଣ କାନକୁହା ଓଡ଼ିଆଙ୍କୁ ହାତ କରି ଉତ୍କୋଚ ଦେଇ ରାଜଗୁରୁଙ୍କର ଲୁକ୍କାୟିତ ସ୍ଥାନ ଜାଣିପାରିଥିଲେ ଓ ସେଠାରେ ରାତି ଅଧରେ ପ୍ରବେଶ କରି ସୁପ୍ତ ରାଜଗୁରୁଙ୍କୁ ବନ୍ଦୀ କରିଥିଲେ ।

ମେଜର ଫ୍ଲେଚର ଖୋର୍ଦ୍ଧାର ଶାସକ ହୋଇ ଘୋଷଣା କଲେ ଯେ, 'ଯଦି ଜୟୀ ରାଜଗୁରୁ କ୍ଷମା ମାଗିବେ, ତେବେ ତାଙ୍କୁ ମୁକ୍ତି ଦିଆଯିବ ।' 'ପଛଘୁଞ୍ଚା ନାହିଁ ବୀରର ଜାତକେ, ନ ମରେ ସେ କେବେ ପରାଣ ଆତଙ୍କେ ।' ବୀର ଜୟୀ ରାଜଗୁରୁ ଦବିଲେ ନାହିଁ । ବିଦେଶୀ ବେପାରୀଙ୍କ ପାଖରେ ରାଜଗୁରୁ କ୍ଷମା ମାଗିଲେ ନାହିଁ ।

କମ୍ପି ଉଠିଲେ ଇଂରେଜ ସରକାର । ତାଙ୍କର ବିଚାର ଆରମ୍ଭ ହେଲା ଓ ବିଚାରରେ ତାଙ୍କୁ ପ୍ରାଣ ଦଣ୍ଡରେ ଦଣ୍ଡିତ କରାଗଲା । ନୃଶଂସ କ୍ରୂର ଇଂରେଜ ଶାସକଙ୍କ ବର୍ବରତାର କାହାଣୀ ସୀମାସରହଦକୁ ଡେଇଁ ଗଲା । ମେଦିନୀପୁର ନିକଟସ୍ଥ ବାଜିତୋଟା ନାମକ ସ୍ଥାନରେ ଥିବା ବରଗଛର ଦୁଇଡ଼ାଳରେ ତାଙ୍କର ଗୋଡ଼କୁ ବାନ୍ଧି ଅମାନୁଷିକ ଭାବରେ ଚିରି ଦିଆଯାଇଥିଲା ।

ଦେଶମାତୃକାର ପୁଣ୍ୟ ପଥରେ ନିଜ ଦେହର ଟୋପା ଟୋପା ରକ୍ତକୁ ନିଗାଡ଼ି ଦେଇଥିଲେ ଜୟୀ ରାଜଗୁରୁ । ଭୟଙ୍କର ଯନ୍ତ୍ରଣାସିକ୍ତ ମୃତ୍ୟୁକୁ ସାମ୍ନା କରି କାଳକାଳକୁ ନିଜ ନାମକୁ ସେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଗଲେ । ସାରା ଭାରତରେ ଚହଳ ପକାଇ ଦେଇଥିଲା ତାଙ୍କର ବିଭତ୍ସ ମୃତ୍ୟୁର ଘଟଣା । ସେହିଦିନଠାରୁ ସ୍ୱାଧୀନତା ଆନ୍ଦୋଳନର ବାଟ ଫିଟିଗଲା ଏବଂ ଜୟୀ ରାଜଗୁରୁ ଥିଲେ ବିପ୍ଳବର ପ୍ରଥମ ଅଗ୍ରଦୂତ । ଓଡ଼ିଶାର ପ୍ରଥମ ସ୍ୱାଧୀନତା ସଂଗ୍ରାମୀ ।

ସେଥିପାଇଁ ଆମ ଓଡ଼ିଆରେ ପ୍ରବଚନଟି ରହିଗଲା-
'ଜଇଆ ପଛେ ଜୀବନ ଦେଲା, ନୁଆଁଇ ନାଇଁ ମଥା ।'

ଏହି ଉପାଦେୟ ଢଗଟି ଓଡ଼ିଆ ପ୍ରାଣରେ ଯେପର୍ଯ୍ୟନ୍ତ ଗୁଞ୍ଜରି ଉଠୁଥିବ, ଅମ୍ଳାନ ପ୍ରତିଭା ଜୟୀ ରାଜଗୁରୁଙ୍କୁ ଓଡ଼ିଆ ଜାତି ସେପର୍ଯ୍ୟନ୍ତ ମନେ ରଖିଥିବ । 'ଜଇଆ' ସତରେ ଧନ୍ୟ କରିଯାଇଛନ୍ତି ଅମୃତଲଗ୍ନା ଉତ୍କଳ ଜନନୀଙ୍କୁ । ଧନ୍ୟ ବିପ୍ଳବୀ ଜୟୀ ରାଜଗୁରୁ । ଅପୂର୍ବ ତାଙ୍କର ଦେଶପ୍ରୀତି ।

କ୍ୱାଟର୍ସ ନଂ: ଟୁ ଆର୍‌ବି-୧୭/୪
ୟୁନିଟ୍-୮, ଭୁବନେଶ୍ୱର-୧୨

---

## ଏଡ୍‌ସ ପ୍ରାଦୁର୍ଭାବ ହ୍ରାସ କରିବା ପାଇଁ ସଚେତନତା କାର୍ଯ୍ୟକ୍ରମକୁ ବ୍ୟାପକ କରାଯିବ

କେନ୍ଦ୍ର ପଞ୍ଚାୟତିରାଜ ମନ୍ତ୍ରଣାଳୟ ପରାମର୍ଶଦାତା ଶ୍ରୀ ଅନୀଶ୍ ଗାନ୍ଧୀ ଗତ ଜାନୁଆରୀ ୧୦ ତାରିଖ ଦିନ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ ଶ୍ରୀ ଦୁର୍ଯ୍ୟୋଧନ ମାଝୀଙ୍କୁ ସାକ୍ଷାତ କରି ଆଲୋଚନା କରିଛନ୍ତି । ଏହି ଆଲୋଚନା ବେଳେ ଏଡ୍‌ସ ନିୟନ୍ତ୍ରଣ ଜାତୀୟ କନ୍‌ସଲ୍‌ଟାଣ୍ଟ ଡାଃ ପଲ୍ଲଭ ଭଟ୍ଟଚାରିଆ ଉପସ୍ଥିତ ଥିଲେ ।

ଏଡ୍‌ସର ପ୍ରାଦୁର୍ଭାବକୁ ହ୍ରାସ କରିବା ଏବଂ ଏହାର ଭୟାବହତାକୁ ପ୍ରତିହତ କରିବା କ୍ଷେତ୍ରରେ ପଞ୍ଚାୟତିରାଜ ପ୍ରତିନିଧିମାନଙ୍କୁ ସାମିଲ କରାଯାଇ ସଚେତନତା କାର୍ଯ୍ୟକ୍ରମକୁ ବ୍ୟାପକ କରାଯିବା ସଂପର୍କରେ ସେମାନେ ଆଲୋଚନା କରିଥିଲେ । ଆସନ୍ତା ଫେବୃଆରୀ ମାସରେ ଅନୁଷ୍ଠିତ ହେଉଥିବା ଗ୍ରାମସଭାମାନଙ୍କରେ ଏ ସଂପର୍କରେ ବିସ୍ତୃତ ଆଲୋଚନା କରାଯିବ । ଉକ୍ତ ବୈଠକରେ ସଂପୃକ୍ତ ଅଞ୍ଚଳର ଏ.ଏନ୍.ଏମ୍., ଅଙ୍ଗନୱାଡ଼ି କର୍ମୀ ଓ ଡାକ୍ତରମାନେ ମଧ୍ୟ ଯୋଗ ଦେବେ । ପଞ୍ଚାୟତିରାଜ ପ୍ରତିନିଧିମାନଙ୍କୁ ସାମିଲ କରି ଏଚ୍.ଆଇ.ଭି./ଏଡ୍‌ସ ନିୟନ୍ତ୍ରଣ କାର୍ଯ୍ୟକ୍ରମକୁ ବ୍ୟାଙ୍କ ବ୍ୟାପକ  କରାଯିବା ପାଇଁ ପଞ୍ଚାୟତିରାଜ ବିଭାଗ ପକ୍ଷରୁ ଏକ ମନିଟରିଂ ସେଲ୍ ଗଠନ କରାଯିବା ନିମନ୍ତେ ନିଷ୍ପତ୍ତି ଗ୍ରହଣ କରାଯାଇଛି । ପଞ୍ଚାୟତିରାଜ ବିଭାଗର ଅତିରିକ୍ତ ଯୁଗ୍ମ ଶାସନ ସଚିବ ଏହାର ଆବାହକ ରହିବେ । ରାଜ୍ୟ ଏଡ୍‌ସ ସେଲ ଏସ୍.ଆଇ.ଆର୍.ଡି. ଏବଂ ପଞ୍ଚାୟତିରାଜ ବିଭାଗ ନିର୍ଦ୍ଦେଶକ ସଦସ୍ୟ ରହିବେ । ଏ ନେଇ ୬ଟି ଜିଲ୍ଲାର ଜିଲ୍ଲା ପରିଷଦ ଓ ପଞ୍ଚାୟତ ସମିତିର ଅଧକ୍ଷ / ଅଧକ୍ଷା, ଜିଲ୍ଲା ପରିଷଦ ଓ ସମିତି ସଭ୍ୟ/ସଭ୍ୟାମାନଙ୍କର ଏକ ବୈଠକ ମଧ୍ୟ ଆହୂତ ହୋଇଛି । ଉକ୍ତ ବୈଠକରେ ଏଡ୍‌ସ ନିୟନ୍ତ୍ରଣ ସଂପର୍କରେ ବ୍ୟାପକ ଆଲୋଚନା ହେବାର କାର୍ଯ୍ୟକ୍ରମ ରହିଛି ।

ଏହା ପୂର୍ବରୁ ଏହି ସଦସ୍ୟଦ୍ୱୟ ପଞ୍ଚାୟତିରାଜ ମନ୍ତ୍ରୀ ଶ୍ରୀ ରଘୁନାଥ ମହାନ୍ତିଙ୍କୁ ସାକ୍ଷାତ କରି ଆଲୋଚନା କରିଥିଲେ । ସଚିବାଳୟଠାରେ ଉକ୍ତ ଆଲୋଚନା ସମୟରେ ପଞ୍ଚାୟତିରାଜ ବିଭାଗ ଶାସନ ସଚିବ ଶ୍ରୀ ରବୀନ୍ଦ୍ରନାଥ ଦାଶ, ନିର୍ଦ୍ଦେଶକ ଶ୍ରୀ ରାଜକିଶୋର ଚୌଧୁରୀ ପ୍ରମୁଖ ଉପସ୍ଥିତ ଥିଲେ ।

# ପାଇକ ବିଦ୍ରୋହର ଅନ୍ୟତମ ବିପ୍ଳବୀ
# ସାମନ୍ତ ପିଣ୍ଡିକି ବାହୁବଳେନ୍ଦ୍ର

ଡକ୍ଟର ଜନ୍ମେଜୟ ଚୌଧୁରୀ

**ଭା**ରତ ଇତିହାସରେ ବହୁ ସ୍ୱାଧୀନତା ସଂଗ୍ରାମୀଙ୍କର ନାମ ଏବେ ମଧ୍ୟ ଲୋକଲୋଚନକୁ ଆସିପାରିନାହିଁ । ସେହିମାନଙ୍କ ମଧ୍ୟରୁ ଭାରତର ଅନ୍ୟତମ କୃତୀ ସନ୍ତାନ ହେଉଛନ୍ତି ଜାତୀୟ ବୀର ପିଣ୍ଡିକି ବାହୁବଳେନ୍ଦ୍ର । ଓଡ଼ିଶାର ଇତିହାସରେ ଏହି ମହାନ ଇତିହାସ ପୁରୁଷଙ୍କର ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ଆବିର୍ଭାବ ହୋଇଥିଲା । ଖୋରଧା ପାଇକ ବିଦ୍ରୋହର ତେର ବର୍ଷ ପୂର୍ବରୁ ଯେଉଁ ରାଜବିଦ୍ରୋହ ହୋଇଥିଲା, ସେ ଥିଲେ ତା'ର ପଟ୍ଟପୁରୋଧା । ପିଣ୍ଡିକି ବାହୁବଳେନ୍ଦ୍ର ଖ୍ରୀଷ୍ଟୀୟ ପ୍ରାୟ ୧୭୬୮ ଖ୍ରୀଷ୍ଟାବ୍ଦରେ ଦାରୁଠେଙ୍ଗ ଗଡ଼ରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପୂର୍ବପୁରୁଷ ଥିଲେ ଖୋର୍ଦ୍ଧା ରାଜାଙ୍କର ଦଳେଇ ।[୧] ବାଲ୍ୟକାଳରୁ ବିଭିନ୍ନ ପ୍ରକାର ବିଦ୍ୟାରେ ବିଶେଷତଃ ସେ ଅସ୍ତ୍ରଚାଳନା ତଥା ଅଶ୍ୱ ସଂଚାଳନରେ ସେ ଅଦ୍ଭୁତ କୌଶଳୀ ଥିଲେ । ସେତେବେଳେ ସମଗ୍ର ଓଡ଼ିଶାରେ ସାମନ୍ତ, କ୍ଷତ୍ରୀୟ, ଖଣ୍ଡାୟତ ଦଳପତିମାନଙ୍କର ଗୋଟିଏ ଗୋଟିଏ ଚଉପାଢ଼ୀ ଥିଲା । ଏଠାରେ ଚାରିପ୍ରକାର ବିଦ୍ୟାଶିକ୍ଷା ଦିଆଯାଉଥିବାରୁ ଏହାର ନାମ ଚଉପାଢ଼ୀ ଅଟେ । ଯଥା- ଫରିଖେଳ (ଖଣ୍ଡା ଚାଳନା), ଧନୁର୍ବିଦ୍ୟା, ଗୁଳିଚାଳନା ଓ ମଲ୍ଲଯୁଦ୍ଧ । ଏ ସମସ୍ତ ବିଦ୍ୟାରେ ନିପୁଣ ଥିଲେ ପିଣ୍ଡିକି । ପିଣ୍ଡିକି ମଧ୍ୟ ଥିଲେ ଯୋଦ୍ଧା । ରାଜୋଚିତ ଚେହେରା, କର୍ଣ୍ଣରେ ସ୍ୱର୍ଣ୍ଣ ଅଳଙ୍କାର, ବେକ ତଥା ହାତରେ ସୁନା ମାଳି ଓ କଙ୍କଣ ପିନ୍ଧୁଥିଲେ ।[୨] ତାଙ୍କୁ ୩୫ ବର୍ଷ ହୋଇଥିବାବେଳେ ଇଂରେଜମାନେ ଖୋରଧା ଆକ୍ରମଣ ଓ ଅଧିକାର କରିଥିଲେ । ପିଣ୍ଡିକି ବାହୁବଳେନ୍ଦ୍ର ଖୁଦୁପୁର ପାଇକରାୟ ବଂଶରେ ବିବାହ କରିଥିଲେ । ତାଙ୍କର ଶ୍ୱଶୁର ବିଷ୍ଣୁ ପାଇକରାୟ ଜଣେ ଇଂରେଜ ବିରୋଧୀ ନେତା ଥିଲେ । ଗଜପତି ପ୍ରଥମ ରାମଚନ୍ଦ୍ର ଦେବ ପୂର୍ବ ଖୋର୍ଦ୍ଧାର ପୂର୍ବଦ୍ୱାର ବରୁଣାଇ ପର୍ବତ ପାଦ ଦେଶର ଅନତି ଦୂରରେ ଉଆସ କରି ତୀର କମାଣ ଜାଗିର ଦେଇ ସେନାପତି ରୂପେ ନିଯୁକ୍ତ କରିଥିଲେ । ଏମାନଙ୍କର ରାଜପଦର ଉପାଧି ଥିଲା ଛୋଟରାୟ । ରାଜସିଦ୍ଧି ଅନୁସାରେ ସିଂହଛବି ଖୋଦିତ ମଗରମୁହାଁ ପାଲିଙ୍କି, ଲାଲଛତ୍ରୀ, ଆଲଟ, ଯୋଡ଼ି କାହାଳୀ, ଯୋଡ଼ି ମଶାଲ, ଧବଳ ଅଶ୍ୱ ଓ ପାଟଖଣ୍ଡା ଥିଲା ଗଜପତି ପ୍ରଦତ୍ତ ରାଜସିଦ୍ଧିର ପରିଚାୟକ ।



୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ମରହଟ୍ଟା କବଳରୁ ରକ୍ଷା ପାଇବା ପାଇଁ ଗଜପତି ଦ୍ୱିତୀୟ ମୁକୁନ୍ଦଦେବ ଇଂରେଜମାନଙ୍କର ଆନୁଗତ୍ୟ ସ୍ୱୀକାର କରିଥିଲେ । ରାଜାଙ୍କଠାରୁ ମରହଟ୍ଟାମାନେ ଛଡ଼ାଇ ନେଇଥିବା ପୁରୀ, ଲେମ୍ବାଇ, ଚବିଶିକୁଦ ଓ ରାହାଙ୍ଗ ପ୍ରଗଣା ଇଂରେଜମାନଙ୍କଠାରୁ ଫେରିପାଇବେ ବୋଲି ରାଜା ୧୮୦୩ରେ କର୍ଣ୍ଣେଲ ହାରକୋର୍ଟଙ୍କୁ ସ୍ୱାଗତ କରିଥିଲେ । ଇଂରେଜମାନଙ୍କ ଓଡ଼ିଶା ଅଧିକାର ପୂର୍ବରୁ ମରହଟ୍ଟାମାନେ ଖୁରୁଧା ଗଜପତିଙ୍କ ଅଧିକାରଭୁକ୍ତ ଚବିଶିକୁଦ, ରାହାଙ୍ଗ, ସିରାଇ ଓ ଲେମ୍ବାଇ ପ୍ରଗଣା ସହିତ ଶ୍ରୀଜଗନ୍ନାଥ ମନ୍ଦିରର ପରିଚାଳନା ଦାୟିତ୍ୱ ନେଇସାରିଥିଲେ । ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜ ସରକାର ମରହଟ୍ଟା ଅଧିକୃତ ଓଡ଼ିଶା ଜୟ କରିବା ପରେ ଜଗନ୍ନାଥ ମନ୍ଦିର ପରିଚାଳନା ଓ ଏଥିରେ ସଂପୃକ୍ତ ବ୍ରାହ୍ମଣମାନଙ୍କ ସ୍ୱାର୍ଥର ସୁରକ୍ଷା ପାଇଁ ମରହଟ୍ଟାମାନଙ୍କ ଓକିଲଙ୍କ ସହିତ ଇଂରେଜ ସରକାରଙ୍କ ତରଫରୁ ଲର୍ଡ଼ ଓ୍ୱେଲେସ୍‌ଲେ ଚୁକ୍ତି ସମ୍ପାଦିତ କରିଥିଲେ । ଚୁକ୍ତି ଅନୁସାରେ ଇଂରେଜ ସରକାରଙ୍କ ୪୪,୭୭୬ ଟଙ୍କା ଅନୁଦାନ ଓ ୯୦ ହଜାର ଟଙ୍କା ବିନିଯୋଗରେ ଜଗନ୍ନାଥ ମହାପ୍ରଭୁଙ୍କର ଦୈନନ୍ଦିନ ପୂଜାବର୍ଷସାରା କରି ଆସୁଥିଲେ । ଇଂରେଜ ସରକାର ୧୮୦୪ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧା ଅଧିକାର କଲେ । ରାଜାଙ୍କର ସର୍ତ୍ତ ପୂରଣ ନହେବାରୁ ୧୮୦୪ରେ ନାଁ ବାଳକ ରାଜାଙ୍କ ପ୍ରଧାନମନ୍ତ୍ରୀ ଜୟୀ ରାଜଗୁରୁଙ୍କର ପରାମର୍ଶରେ ଯେଉଁ ବିଦ୍ରୋହ କଲେ, ତାହା ହେଲା ଖୋର୍ଦ୍ଧା ରାଜବିଦ୍ରୋହ । ସେ ସମୟରେ ରାଜା ବରୁଣାଇ ପାହାଡ଼ର ପଶ୍ଚିମ ପଟେ ଥିବା ଗଡ଼ରେ ନରହି ଘାଟିଗଡ଼ରେ ରହି ଗୋପନରେ ପଳାଇ

ଯାଇଥିଲେ । ପରେ ଜୟୀ ରାଜଗୁରୁ ଓ ରାଜା ଉଭୟେ ଧରା ହୋଇ କଟକ ବାରବାଟୀ ଦୁର୍ଗକୁ ଏବଂ ସେଠାରୁ ଉଭୟଙ୍କୁ ବଙ୍ଗଳାର ମେଦିନପୁର ଜେଲକୁ ପଠାଯାଇଥିଲା ।[୩] ୧୮୦୪ ମସିହା ଡିସେମ୍ବର ୫ ତାରିଖରେ ଖୋର୍ଦ୍ଧା ରାଜା ଗାଦିଚ୍ୟୁତ ହେଲେ ବୋଲି ସରକାର ନିର୍ଦ୍ଦେଶନାମା ଜାରି କରିଥିଲେ । ୧୮୦୫ରେ ଜୟୀ ରାଜଗୁରୁଙ୍କୁ ମେଦିନିପୁରଠାରେ ଫାଶୀ ଦିଆଯାଇଥିଲା । ରାଜା ନିର୍ଦ୍ଦୋଷ ବୋଲି ସରକାରଙ୍କଠାରେ ଆତ୍ମସମର୍ପଣ କରି ୧୮୦୭ରେ ମୁକ୍ତ ହେଲେ ପୁରୀ ବାଲିସାହି ପୁରୁଣା ନଅରରେ କାଳାତିପାତ କଲେ । ସେହି ସମୟରେ କୁଦିଆରୀର ଚରଣ ପଟ୍ଟନାୟକ ଇଂରେଜ ସରକାରଙ୍କୁ ସାହାଯ୍ୟ କରି ନିମକହାରାମ୍ ଜାଗିରୀ ପାଇଥିଲେ । ୧୮୦୪ ମସିହାରେ ଚରଣ ପଟ୍ଟନାୟକଙ୍କ ଘରେ ପାଇକମାନେ ଅଗ୍ନି ସଂଯୋଗ କରିଥିଲେ ।[୪]

ସେହି ସମୟରେ କୁଦିଆରୀର ଚରଣ ପଟ୍ଟନାୟକ ଇଂରେଜ ସରକାରଙ୍କୁ ସାହାଯ୍ୟ କରି ନିମକହାରାମ୍ ଜାଗିରୀ ପାଇଥିଲେ । ୧୮୦୪ ମସିହାରେ ଚରଣ ପଟ୍ଟନାୟକଙ୍କ ଘରେ ପାଇକମାନେ ଅଗ୍ନି ସଂଯୋଗ କରିଥିଲେ ।

କମିଶନର କର୍ଣ୍ଣେଲ ହାରକୋଟ୍ ଖୋର୍ଦ୍ଧାର ନିଷ୍କର ଜମି ଉପରେ କରଧାର୍ଯ୍ୟ କଲେ । ଏହି ପରିପ୍ରେକ୍ଷୀରେ ଦାଣ୍ଡିମାଳର ଦାମୋଦର ପଟ୍ଟନାୟକ ଓ କହ୍ନେଇ ଶତପଥୀ ଇଂରେଜମାନଙ୍କର ପରମ ଭକ୍ତ ଥିଲେ । କିନ୍ତୁ ବିପ୍ଳବୀ ପିଣ୍ଡିକି ସରକାରୀ ଆଦେଶ ଅମାନ୍ୟ କରି ସହଯୋଗୀମାନଙ୍କୁ ଧରି ଦାଣ୍ଡିମାଳ ଅଞ୍ଚଳରେ ସରକାରୀ ଅଫିସ୍ ଗୋଟି ଖଜଣାଖାନା ଲୁଟି ଓ ଇଂରେଜ କର୍ମଚାରୀଙ୍କୁ ହତ୍ୟାକରି ଆତଙ୍କ ସୃଷ୍ଟି କରିଥିଲେ । ତାଙ୍କର ଆଡ୍ଡାସ୍ଥଳ ଥିଲା ଗଡ଼ ଛତାକର, ଗଡ଼ କଣ୍ଟାବାଡ଼ ଓ ଗଡ଼ ମେଣ୍ଢାଶାଳ ପଶ୍ଚିମ ଖୋର୍ଦ୍ଧାର ଓଲସିଂହଗାଁର କରଣ ଇଂରେଜମାନଙ୍କୁ ସାହାଯ୍ୟ କରିଥିଲେ ।[୫]

ଧନ ଲୋଭରେ ଓଲସିଂହ ସାମନ୍ତ ଇଂରେଜ ବାହିନୀକୁ ଖୋରଧାଗଡ଼ର ବାଟ ଦେଖାଇବାକୁ ସ୍ୱୀକାର ଜଣାଇଲେ ଏବଂ ନିମକହାରାମ ଜାଗିରୀପ୍ରାପ୍ତ ହୋଇ ବାଟ ବତାଇ ଦେଲେ ।[୬] ଉତ୍ତର ଖୋର୍ଦ୍ଧାର ମଳିପଡ଼ାଗଡ଼ର ଧ୍ରୁବଜୟ ହରିଚନ୍ଦନ ଇଂରେଜ ସରକାରଙ୍କୁ ସାହାଯ୍ୟ କରି ମିତ୍ରଦ୍ରୋହୀ ନିମକହାରାମ ଜାଗିରୀପ୍ରାପ୍ତ ହୋଇଥିଲେ । ୧୮୦୪ ମସିହା ଡିସେମ୍ବର ମାସର ମଧ୍ୟଭାଗରେ କମିଶନର କର୍ଣ୍ଣେଲ ହାରକୋଟ ସାହେବ ଖୋରଧା ଅଞ୍ଚଳର ସାମନ୍ତ ଖଣ୍ଡାୟାତମାନଙ୍କୁ ଡକାଇ ଇଂରେଜମାନଙ୍କ ଆନୁଗତ୍ୟ ସ୍ୱୀକାର କରିବା ପାଇଁ ବିଶେଷ ଅନୁରୋଧ କରିଥିଲେ ଏବଂ ଗଜପତି ଦ୍ୱିତୀୟ ମୁକୁନ୍ଦ ଦେବଙ୍କୁ ସାହାଯ୍ୟ କଲେ କଠୋର ଦଣ୍ଡ ଦିଆଯିବ ବୋଲି ଆଦେଶନାମା ଜାରି କରିଥିଲେ ।[୭] କମିଶନର କର୍ଣ୍ଣେଲ ହାରକୋର୍ଟ ୧୮୦୪ରେ ଖୋର୍ଦ୍ଧା ତଥା ଦାଣ୍ଡିମାଳର ଦଳେଇ, ଦଳବେହେରା ସରକାରଙ୍କୁ ସହଯୋଗ କରିବା ପାଇଁ ନିବେଦନ କରିଥିଲେ ଏବଂ ପ୍ରଜାମାନଙ୍କର ଆଶାଆକାଂକ୍ଷା ପୂରଣ କରିବେ ବୋଲି ଆଶ୍ୱାସନା ଶୁଣାଇ ପ୍ରତିଶ୍ରୁତି ଦେଇଥିଲେ ମଧ୍ୟ ସେଥିରୁ ଅନେକ ମେଳିଆ ପାଇକ ସେନାପତି ରାଜି ହୋଇନଥିଲେ । ସେମାନଙ୍କ ମଧ୍ୟରୁ ବିପ୍ଳବୀ ପିଣ୍ଡିକି ଥିଲେ ଅନ୍ୟତମ । ସେ ଖୋର୍ଦ୍ଧା ପାଇକ ବିଦ୍ରୋହ ପୂର୍ବରୁ ଖୋର୍ଦ୍ଧା ରାଜବିଦ୍ରୋହର ନେତୃତ୍ୱ ନେଇ ଇଂରେଜ ସରକାର ବିରୋଧରେ ବିଦ୍ରୋହ କରିଥିଲେ । ଗଡ଼ ଛତାବର, ଗଡ଼ କଣ୍ଟାବାଡ଼, ଗଡ଼ ଚନ୍ଦକା, ଗଡ଼ ଅନ୍ଧାରୁଆ, ଗଡ଼ ମଳିପଡ଼ା, ପାଇକରାପୁର, ମଦନପୁର, ସାଁପୁର, ଗଡ଼ ଅରିସଲ, ଗଡ଼ ମେଣ୍ଢାଶାଳ ଓ ଗଡ଼ ବିଂଝଗିରି ଆଦି ସ୍ଥାନ ତାଙ୍କର ଆଡ୍ଡାସ୍ଥଳୀ ଥିଲା । ସରକାରୀ ରେକର୍ଡ଼ରେ ତାଙ୍କୁ ଡକାୟତ ସର୍ଦ୍ଦାର ଓ ଦୁର୍ଦ୍ଧାନ୍ତ ଶିକାରୀ ରୂପରେ ଚିତ୍ରଣ କରାଯାଇଛି । ଖୋର୍ଦ୍ଧା ମୂଳକରେ ଫିରିଙ୍ଗି ସରକାରଙ୍କର ଅନ୍ୟାୟ ଅତ୍ୟାଚାର ବିରୋଧରେ ସେ ଅସ୍ତ୍ର ଉତ୍ତୋଳନ କରିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଖୋର୍ଦ୍ଧା ମୂଳକରୁ ଇଂରେଜ ଶାସନ ଲୋପ କରିବା । ସେ ନିର୍ଭୀକ ଓ ନିଃସ୍ୱାର୍ଥପର ଥିବାରୁ ପାଇକମାନଙ୍କୁ ଗରିଲା ଯୁଦ୍ଧ ଓ ଖଣ୍ଡ ଯୁଦ୍ଧ ଶିକ୍ଷା ଦେବା ପାଇଁ ପାଇକମାନଙ୍କୁ ଏକତ୍ର କରି ସୁସଂଗଠିତ କରିବାରେ ସେ ଥିଲେ ସିଦ୍ଧହସ୍ତ । ସରକାରୀ ଖଜଣାଖାନା ଲୁଟି, ଥାନା ପୋଡ଼ି, କମ୍ପାନୀ ଫୌଜକୁ ହତ୍ୟା ଆଦି କାର୍ଯ୍ୟରେ ଲିପ୍ତ ରହି ସରକାରଙ୍କୁ ଆତଙ୍କିତ ଓ ବିବ୍ରତ କରାଇଥିଲେ । ସେ କେବଳ ନିଜ ଅଞ୍ଚଳରେ ନୁହେଁ ସମଗ୍ର ଖୋର୍ଦ୍ଧା ଓ ପିପିଲି ଅଞ୍ଚଳରେ ଆତଙ୍କ ସୃଷ୍ଟି କରି ସରକାରଙ୍କୁ ଭୟଭୀତ କରାଇଥିଲେ । ଏସବୁ କାର୍ଯ୍ୟ ପାଇଁ ତାଙ୍କୁ ବନ୍ଦୀ କରାଯାଇଥିଲେ ମଧ୍ୟ ବନ୍ଦୀଶାଳାର ରକ୍ଷୀମାନଙ୍କ ଆଖିରେ ଧୂଳି ପକାଇ ସୂକ୍ଷ୍ମ ବୁଦ୍ଧି ବଳରେ ବନ୍ଦୀଶାଳାରୁ ସେ ଖସି ଆସିଥିଲେ ।[୮]

୧୮୧୭ ମସିହାରେ ଇତିହାସ ପ୍ରସିଦ୍ଧ ପାଇକ ବିଦ୍ରୋହ ହୋଇଥିଲା । ପିଣ୍ଡିକିଙ୍କ ସହିତ ସରକାରଙ୍କର ଏଥିରେ କୌଣସି ମତାନ୍ତର ନଥିଲା । ମାତ୍ର ବିପ୍ଳବୀ ପିଣ୍ଡିକି ଥିଲେ ସ୍ୱାଧୀନଚେତା, ନିଃସ୍ୱାର୍ଥପର, ନିର୍ଭୀକ ଓ ଉପଯୁକ୍ତ ସ୍ୱାଧୀନତା ସଂଗ୍ରାମୀ । ଖୋର୍ଦ୍ଧା ତଥା ଓଡ଼ିଶାର ମୁକ୍ତି ଆନ୍ଦୋଳନରେ ସେ ଆପେ ଆପେ ଝାସ ଦେଇଥିଲେ । ବକ୍ସି ଜଗବନ୍ଧୁଙ୍କ ପରେ ଯୋଗ୍ୟତା ଓ ସମ୍ମାନ ଅନୁସାରେ ପିଣ୍ଡିକିଙ୍କ ସ୍ଥାନ ଥିଲା ଦ୍ୱିତୀୟରେ । ସେ ଭୟଭୀତ ନ ହୋଇ କମ୍ପାନୀ ସରକାର ବିରୁଦ୍ଧରେ ବିଶାଳ ପାଇକ ବାହିନୀକୁ ଧରି ବଣ ଜଙ୍ଗଲରେ ଲୁଚିଛପି ଖଣ୍ଡଯୁଦ୍ଧ କରିଥିଲେ । ସ୍ଥାନୀୟ ବ୍ୟକ୍ତି ସାହାଯ୍ୟ କରୁଥିବାରୁ ଏମାନଙ୍କୁ

ବକ୍ସି ଜଗବନ୍ଧୁଙ୍କ ପରେ ଯୋଗ୍ୟତା ଓ ସମ୍ମାନ ଅନୁସାରେ ପିଣ୍ଡିକିଙ୍କ ସ୍ଥାନ ଥିଲା ଦ୍ୱିତୀୟରେ । ସେ ଭୟଭୀତ ନ ହୋଇ କମ୍ପାନୀ ସରକାର ବିରୁଦ୍ଧରେ ବିଶାଳ ପାଇକ ବାହିନୀକୁ ଧରି ବଣ ଜଙ୍ଗଲରେ ଲୁଚିଛପି ଖଣ୍ଡଯୁଦ୍ଧ କରିଥିଲେ । ସ୍ଥାନୀୟ ବ୍ୟକ୍ତି ସାହାଯ୍ୟ କରୁଥିବାରୁ ଏମାନଙ୍କୁ ଧରିବା ଇଂରେଜ ପକ୍ଷେ କଷ୍ଟସାଧ ଥିଲା ।

ଧରିବା ଇଂରେଜ ପକ୍ଷେ କଷ୍ଟସାଧ ଥିଲା । ୧୮୧୮ ମସିହା ସେପ୍‌ଟେମ୍ବର ୨୦ ତାରିଖରେ ସରକାର ପିଣ୍ଡିକିଙ୍କୁ ଧରିବା ପାଇଁ ଚେଷ୍ଟା କରି ବିଫଳ ହେଲେ । ତେଣୁ ସରକାର ତାଙ୍କୁ ବନ୍ଦୀ କରିବା ପାଇଁ ନୂତନ ପଦ୍ଧତି ଅବଲମ୍ବନ କଲେ । ଯଥା- କ) ପାଇକମାନଙ୍କୁ ସେମାନଙ୍କର ପ୍ରତିନିଧି (ନେତା)ମାନଙ୍କଠାରୁ ଅଲଗା କରିବା ପାଇଁ ସରକାର ଘୋଷଣା କଲେ ଯେ ଯେଉଁ ପାଇକମାନେ ସ୍ୱତଃପ୍ରବୃତ୍ତ ହୋଇ ସେମାନଙ୍କର ପ୍ରିୟ ନେତାମାନଙ୍କୁ ତ୍ୟାଗ କରି ସରକାରଙ୍କ ନିକଟରେ ଆତ୍ମସମର୍ପଣ କରିବେ, ତେବେ ସେମାନଙ୍କୁ କ୍ଷମା ଦିଆଯିବ । ଖ) ଆତ୍ମଗୋପନ କରିଥିବା ବିଦ୍ରୋହୀମାନେ ଦୁଇ ମାସ ମଧ୍ୟରେ ଖୋର୍ଦ୍ଧାର ଜଏଣ୍ଟ ମାଜିଷ୍ଟ୍ରେଟ୍‌ଙ୍କ ପାଖରେ ଆତ୍ମସମର୍ପଣ କଲେ ସେମାନଙ୍କୁ କ୍ଷମା ଦିଆଯିବ ।

ଚତୁରତାର ସହିତ ପିଣ୍ଡିକି ବିଭିନ୍ନ ପ୍ରକାର ଛଦ୍ମବେଶରେ ଖଣ୍ଡଗିରି, ଚନ୍ଦକା ଜଙ୍ଗଲରେ ଆତ୍ମଗୋପନ କରି ସରକାରୀ, ଖଜଣାଖାନା ଲୁଟ୍ ଓ ସରକାରୀ କର୍ମଚାରୀଙ୍କୁ ନିର୍ମମ ଭାବରେ ହତ୍ୟା କରିବା ଆରମ୍ଭ କଲେ । ସରକାର ବ୍ୟତିବ୍ୟସ୍ତ ହୋଇ ପିଣ୍ଡିକିଙ୍କୁ ବନ୍ଦୀ କରିବା ପାଇଁ ବ୍ୟବସ୍ଥା କଲେ । ଏହି ସମୟରେ ଦୁଇଜଣ ବିଦ୍ରୋହୀ ମଧୁ ମହାନ୍ତି ଓ ବିଷ୍ଣୁ ମହାନ୍ତି ବିଶ୍ୱାସଘାତକ କାର୍ଯ୍ୟ କଲେ । ପିଣ୍ଡିକି ଓ ତାଙ୍କର ସହଯୋଗୀମାନଙ୍କୁ ଧରିବା ପାଇଁ ସେ ଦୁଇଜଣ ଖୋର୍ଦ୍ଧାର ଆକ୍ଟିଙ୍ଗ୍ ମାଜିଷ୍ଟ୍ରେଟ୍ ଏମ୍.ଏଚ୍. ଟର୍ଣ୍ଣବୁଲ୍‌ଙ୍କୁ ସମ୍ବାଦ ଦେଇ ଧରାଇଦେଲେ । ପୁରସ୍କାର ପାଇବା ପାଇଁ ମଧ ସେମାନେ ମାଜିଷ୍ଟ୍ରେଟ୍‌ଙ୍କଠାରୁ ପ୍ରତିଶ୍ରୁତି ପାଇଥିଲେ । ମଧୁ ମହାନ୍ତି ଓ ବିଷ୍ଣୁ ମହାନ୍ତିଙ୍କ ସାହାଯ୍ୟରେ ଆତ୍ମଗୋପନ କରିଥିବା ପିଣ୍ଡିକିଙ୍କୁ ଗିରଫ କରିବା ଦାୟିତ୍ୱ ବିଗ୍ରେଡିୟର ଥୋମାସ୍ ସାହେବଙ୍କ ଉପରେ ନ୍ୟସ୍ତ କରାଗଲା । ୧୮୧୮ ମସିହା ସେପ୍‌ଟେମ୍ବର ୨୦ ତାରିଖରେ ସେମାନେ ସମସ୍ତେ ପିଣ୍ଡିକିଙ୍କୁ ଧରିବା ପାଇଁ ଚେଷ୍ଟା କଲେ । ମାତ୍ର ପିଣ୍ଡିକି ଅନ୍ୟତ୍ର ଚାଲିଯାଇଥିବାରୁ ତାଙ୍କର କେତେକ ସହଯୋଗୀ ଧରାପଡ଼ିଥିଲେ । ପିଣ୍ଡିକି ଧରାପଡ଼ିନଥିଲେ । ତେଣୁ ପିଣ୍ଡିକିଙ୍କୁ ଧରାଇ ଦେବା ପାଇଁ ୧,୦୦୦ ଟଙ୍କା ପୁରସ୍କାର ଦେବାପାଇଁ ମାଜିଷ୍ଟ୍ରେଟ୍ ଟର୍ଣ୍ଣବୁଲ୍ କମିଶନର ସାହେବଙ୍କୁ ପ୍ରସ୍ତାବ ଦେଲେ ।[୧୦] କମିଶନର ସାହେବ ଆର୍. କେର୍ ପ୍ରସ୍ତାବ ଦେଲେ ପିଣ୍ଡିକି ଓ ତାଙ୍କ ସହଯୋଗୀ ଗୋପାଳ ଛୋଟରାୟ ଏବଂ ପଦ୍ମନାଭ ଛୋଟରାୟଙ୍କ ବ୍ୟତୀତ ଅନ୍ୟ ସହଯୋଗୀମାନଙ୍କୁ ସାର୍ବଜନୀନ କ୍ଷମା ଦେବା ଉଚିତ । ଆତ୍ମଗୋପନ କରିଥିବା ବିଦ୍ରୋହୀମାନେ ଯଦି ଦୁଇମାସ ଭିତରେ ଖୋର୍ଦ୍ଧାର ଜଏଣ୍ଟ ମାଜିଷ୍ଟ୍ରେଟଙ୍କପାଖରେ ଆତ୍ମସମର୍ପଣ କରିବେ, ତେବେ ସେମାନଙ୍କୁ କ୍ଷମା ଦିଆଯିବ । କିନ୍ତୁ ପିଣ୍ଡିକି ଏ କ୍ଷମାର ଅନ୍ତର୍ଭୁକ୍ତ ନଥିଲେ । ସରକାରୀ ଘୋଷଣା ପରେ ପରେ ପିଣ୍ଡିକି ବ୍ୟତୀତ ଅନ୍ୟମାନେ ଧରାପଡ଼ିଥିଲେ ।

ଖୋର୍ଦ୍ଧା ଅଧୀନସ୍ଥ ଗଡ଼ମଳିପଡ଼ା ଗ୍ରାମର ଜାଗିରଦାର ଥିଲେ ପିଣ୍ଡିକିଙ୍କର ମିତ୍ର ଧ୍ରୁବଜୟ ହରିଚନ୍ଦନ, ଯାହାଙ୍କ ଗୃହକୁ ଆତ୍ମଗୋପନ ନିମିତ୍ତ ବିଶ୍ୱସ୍ତରେ ପିଣ୍ଡିକି ଯାତାୟାତ କରୁଥିଲେ । ଏ ସମୟରେ ପିଣ୍ଡିକିଙ୍କୁ ଧରିବା ପାଇଁ ସରକାରୀ କଳର ସମସ୍ତ ଚେଷ୍ଟା ସତ୍ୱେ ତାଙ୍କୁ ଧରିବାରେ ଅକୃତକାର୍ଯ୍ୟ ହେବାରୁ ସରକାର, ବ୍ୟସ୍ତ ଓ ବିବ୍ରତ ହୋଇପଡ଼ିଥିଲେ । ଶେଷରେ ଖଚୁଆମାନଙ୍କଠାରୁ ସରକାର ଜାଣିବାକୁ ପାଇଲେ ଯେ ଧ୍ରୁବଜୟ ହରିଚନ୍ଦନ ହେଉଛନ୍ତି ପିଣ୍ଡିକିଙ୍କ ବିଦ୍ରୋହର ଅନ୍ୟତମ ନେତା । ସରକାରୀ କର୍ମଚାରୀ ଏକଥା ଜାଣି ଜାଗିରଦାରକୁ ନିର୍ଦ୍ଦେଶ ଦେବାରୁ ଜାଗିରିଦାର ପିଣ୍ଡିକିଙ୍କୁ ଧରାଇ ନଦେଲେ ଧ୍ରୁବଜୟ ହରିଚନ୍ଦନଙ୍କ ସମସ୍ତ ଜାଗିରୀ ବାଜ୍ୟାପ୍ତି ସାଙ୍ଗକୁ ତାଙ୍କୁ କଠୋର ଦଣ୍ଡ ଦିଆଯିବ ବୋଲି ପ୍ରସ୍ତାବ ଦେଲେ । ସରକାରଙ୍କୁ ସାହାଯ୍ୟ କରି ପିଣ୍ଡିକିଙ୍କୁ ଧରାଇ ଦେଲେ ସମସ୍ତ ସରକାରୀ ସୁବିଧା ପ୍ରଦାନ ସହିତ ୧୦୦୦ ଟଙ୍କା ନଗଦ ପୁରସ୍କାର ପ୍ରଦାନ କରାଯିବ ବୋଲି ଘୋଷଣା କରାଯାଇଥିଲା । ଜାଗିର ଲୋଭ ଓ ଅର୍ଥ ଲୋଭରେ ବଶ ହୋଇ ମଳିପଡ଼ାର ଜାଗିରଦାର ଧ୍ରୁବଜୟ ହରିଚନ୍ଦନ ସରକାରଙ୍କୁ ଗୋପନରେ ବାର୍ତ୍ତା ଦେଲେ ଯେ, ସେ ପିଣ୍ଡିକିଙ୍କୁ ଧରାଇ ଦେବେ । ମାର୍ଗଶିର ମାସ ଗୁରୁବାର ମାଣବସା ରାତ୍ରିରେ ପିଣ୍ଡିକି ତାଙ୍କର ସହଯୋଗୀମାନଙ୍କ ସହ ମଳିପଡ଼ାରେ ଆସି ପହଞ୍ଚିବା ସଂଗେସଂଗେ ଜାଗିରଦାର ତାଙ୍କୁ ସମ୍ମାନର ସହ ପାଛୋଟି ଆଣି ଖାଇବା ପିଇବାର ସୁବନ୍ଦୋବସ୍ତ କରିଥିଲେ । ଏହା ଥିଲା ଏକ ପୂର୍ବ ସୁପରିକଳ୍ପିତ ବିଧିବଦ୍ଧ ଯୋଜନା । ପିଣ୍ଡିକିଙ୍କ ଅଗୋଚରରେ ସେ ସେହିଦିନ ଖୋର୍ଦ୍ଧାର ସରକାରୀ ସେନାଧକ୍ଷ ଓ ସୈନ୍ୟମାନଙ୍କୁ ଅଣାଇ ମଳିପଡ଼ାର ଜଙ୍ଗଲରେ ଲୁଚାଇ ରଖିଥିଲେ । ପିଣ୍ଡିକି ଜାଗିରଦାରଙ୍କ ଗୃହକୁ ଆସିବାକ୍ଷଣି ତାଙ୍କୁ ଭାଙ୍ଗ ପିଆଇ ନିଶାସକ୍ତ କରିଦେଲେ । ଫଳରେ ପିଣ୍ଡିକି ନିଶାରେ ଅଜ୍ଞାନ ହୋଇ ଶୋଇ ପଡ଼ିଲେ । ଏ ଅବସ୍ଥାରେ ସରକାରୀ ସିପାହୀ ଦଳ ଜାଗିରଦାରଙ୍କଠାରୁ ଖବର ପାଇ ସେଠାରେ ଉପନୀତ ହୋଇ ଶୋଇଥିବା ଅବସ୍ଥାରେ ପିଣ୍ଡିକିଙ୍କୁ ଧରି ନେଲେ ।[୧୧] ୧୮୧୮ ମସିହା ସେପ୍ଟେମ୍ବର ମାସରେ ଖୁରୁଧା, କଟକ, କଲେକ୍ଟରିଏଟରୁ ପୃଥକ୍ ହୋଇ ଏକ ନୂତନ ସବ୍‌ଡିଭିଜନରେ ପରିଣତ ହେଲା । ଫରେଷ୍ଟର ସାହେବ ଉକ୍ତ ନୂତନ ସବ୍‌ଡିଭିଜନର ଯୁଗ୍ମ (ସେପ୍ଟେମ୍ବର ୧୮୧୮ରୁ ମଇ ୧୮୨୦) ଦାୟିତ୍ୱ ଗ୍ରହଣ କଲେ । ତାଙ୍କ ରିପୋର୍ଟ ଅନୁସାରେ ହଳଦିଆଗଡ଼ର ଜମିଦାର ଓ ମଳିପଡ଼ାଗଡ଼ର ଖଣ୍ଡାୟତ ଜାଗିରଦାର ଇଂରେଜ ସରକାରଙ୍କଠାରୁ ସନନ୍ଦପ୍ରାପ୍ତ ହୋଇଥିଲେ । ଫରେଷ୍ଟର ସାହେବଙ୍କ ସୁପାରିଶରେ ଧ୍ରୁବଜୟ ହରିଚନ୍ଦନଙ୍କୁ ୧୦୦୦ ଟଙ୍କା ପୁରସ୍କାର ଦେବା ସହିତ ଖଣ୍ଡାୟତିର ରକବା ୭୪ କୋଟି ୧୦ ମାଣ ବାର୍ଷିକ ୩୭୩ ଟଙ୍କା ଖଜଣାରେ ତାଙ୍କୁ ଦିଆଯାଇଥିଲା । ଏ ସମ୍ପର୍କରେ ୧୮୨୧ ମସିହାରେ ତାଙ୍କୁ ଏକ ସନନ୍ଦ ପ୍ରଦାନ କରାଯାଇଥିଲା । ଏହା ଥିଲା ଏକ ଦ୍ୱିଭାଷିକ (ଉଭୟ ପାର୍ସି ଓ ଓଡ଼ିଆ ଭାଷାରେ ଲିଖିତ) ସନନ୍ଦ । ଏହି ଜାଗିରୀ ମିତ୍ରଦ୍ରୋହୀ ଜାଗିରୀ ନାମରେ ପରିଚିତ ସନନ୍ଦ ।

ବିପ୍ଳବୀ ସାମନ୍ତ ପିଣ୍ଡିକି ବାହୁବଳେନ୍ଦ୍ର ସମଗ୍ର ଜୀବନ ମାତୃଭୂମିର ସ୍ୱାଧୀନତା ପାଇଁ ଜଳାଞ୍ଜଳି ଦେଇ ସମଗ୍ର ଓଡ଼ିଶାକୁ ସ୍ୱାଧୀନ କରିବା ପାଇଁ ଯେଉଁ ନେତୃତ୍ୱ ନେଇଥିଲେ ସେହି ନିର୍ଭୀକ ନିଃସ୍ୱାର୍ଥପର ସ୍ୱଦେଶବତ୍ସଳ ଆଜି ଇତିହାସର ବିସ୍ମୃତ ଗର୍ଭରେ ଲୀନ ହୋଇଛନ୍ତି । ଏହି ମହାନ୍ ସ୍ୱାଧୀନତା ସଂଗ୍ରାମୀଙ୍କ ଆଦର୍ଶରେ ଆଧୁନିକ ଦିଗଭ୍ରଷ୍ଟ ଯୁବସମାଜ ଅନୁପ୍ରାଣିତ ହେଲେ ଜାତୀୟ ସଂପତ୍ତି ଉଜ୍ଜୀବିତ ହୋଇରହିବ ।

ସହାୟକ ଗ୍ରନ୍ଥସୂଚୀ


୧. S.C. De, Guide to Orissan Records. Vol.-III, p.-61
R. Ker, Commissioner, Cuttack to W.B. Bayley, Secretary to Government in the Judicial Department, Fort William, 14th December 1818.

୨. କନ୍ହେଇଁ ଚମ୍ପତିରାୟ, ପାଇକ ଖେଦା - ପୃ.-୧୯

୩. ଦିଗମ୍ବର ଶ୍ରୀଚନ୍ଦନ - ଖୁରୁଧା ଦର୍ପଣ (ପ୍ରଥମ ଭାଗ), ପୃ.-୧୩, ୨୩

୪. ଏଜନ, ପୃ.-୧୩-୧୪

୫. ଏଜନ (ଦ୍ୱିତୀୟ ଭାଗ), ପୃ.-୫୭

୬. ପଣ୍ଡିତ ସଦାଶିବ ରଥଶର୍ମା - ଅମରଚରିତ (୪ର୍ଥ ଭାଗ), ପୃ.-୨୦

୭. ପଣ୍ଡିତ ସୂର୍ଯ୍ୟନାରାୟର ଦାଶ- ଗତ ଶତାବ୍ଦୀର ଓଡ଼ିଶା, ପୃ.-୪୬-୪୮

୮.କ. Stirling to W.H. Melville, Joint Magistrate, Puri 20th Nov. 1818, B, R.A. Vol-I, June 1818 to April 1820, p.-67

ଖ. OSA. ACC. N-45 M.H. Tumbal to R. Ker, 30 Sept. 1818.

ଗ. R. Ker to W.B. Bayley 14th Dec. 1818. De., S.C. Guide to Orissan Records (ed) Vol.-III, p.-64

ଘ. P.K. Pattnaik, A forgotten Chapter of Orissa History.

ଙ. ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ପାଇକ ବିଦ୍ରୋହ, ପୃ.-୧୦୦.

୯. OSA, ACE. No.45, Judicial/Cuttack. M.H. Turnbull, acting Magistrate to R. Ker, 13th Sept. 1818.

୧୦. OSA, Forester to R. Ker 13th Sept. 1818 Vol.-45

୧୧. ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାସ, ଏଜନ, ପୃ.-୧୨୩

୧୨. W.C. Taylor, complete report on the survey and settlement of Khurda Estate, p.-107, OSA.



ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ
କାଇପଦର, ଖୋର୍ଦ୍ଧା


# ତେଲେଙ୍ଗାପେଣ୍ଠ ଗାନ୍ଧୀ ସ୍ମୃତି ପୀଠରେ ତିନିଦିନ ପର୍ଯ୍ୟନ୍ତ ପ୍ରଦର୍ଶନୀ ହେବ

କଟକ ସଦର ଅନ୍ତର୍ଗତ ତେଲେଙ୍ଗା ପେଣ୍ଠ ଗାନ୍ଧୀ ସ୍ମୃତି ସଂସଦ ପକ୍ଷରୁ ପ୍ରତି ବର୍ଷ ପରି ଚଳିତ ବର୍ଷ ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ମହାପ୍ରୟାଣ ଦିବସ ଜାନୁଆରୀ ୩୦ ତାରିଖରେ ଗାନ୍ଧୀ ସ୍ମୃତି ପୀଠରେ ସମାରୋହ ପାଳନ କରାଯିବା ସହ ୩ ଦିନ ବ୍ୟାପି ଏକ ଗ୍ରାମାଞ୍ଚଳ ପ୍ରଦର୍ଶନୀ ସେଠାରେ ଆୟୋଜିତ କରାଯାଉଛି ।

ଏହି ଉପଲକ୍ଷେ କଟକ ସଦର ବିଧାୟକ ଶ୍ରୀ ପ୍ରଭାତ ରଂଜନ ବିଶ୍ୱାଳଙ୍କ ଅନୁରୋଧକ୍ରମେ ଗତ ଜାନୁଆରୀ ୧୧ ତାରିଖରେ ସଚିବାଳୟଠାରେ କୃଷି ମନ୍ତ୍ରୀ ଶ୍ରୀ ସୁରେନ୍ଦ୍ରନାଥ ନାୟକଙ୍କ ଅଧ୍ୟକ୍ଷତାରେ ଏକ ବୈଠକ ଅନୁଷ୍ଠିତ ହୋଇଥିଲା । ତେଲେଙ୍ଗାପେଣ୍ଠଠାରେ ଚଳିତ ମାସ ୩୦ ତାରିଖଠାରୁ ତିନିଦିନ ବ୍ୟାପି ରାଜ୍ୟ ସରକାରଙ୍କର ବହୁମୁଖୀ ଯୋଜନାର ଉନ୍ନୟନମୂଳକ କାର୍ଯ୍ୟକ୍ରମକୁ ନେଇ ଏକ ପ୍ରଦର୍ଶନୀର ଆୟୋଜନ କରାଯାଉଛି ଓ ଏହି ପ୍ରଦର୍ଶନୀକୁ ରାଜ୍ୟର ମୁଖ୍ୟମନ୍ତ୍ରୀ ଉଦ୍‌ଘାଟନ କରିବା ପାଇଁ ପ୍ରସ୍ତାବ ରହିଛି । ପ୍ରଦର୍ଶନୀରେ ଖଦୀବୋର୍ଡ଼, ପଞ୍ଚାୟତିରାଜ, କୃଷି ଓ ଉଦ୍ୟାନ, କଟେଜ ଇଣ୍ଡଷ୍ଟ୍ରୀ, ଡି.ଆର୍.ଡି.ଏ. ଓ ଅନ୍ୟାନ୍ୟ ବିଭାଗପକ୍ଷରୁ ଷ୍ଟଲମାନ ଖୋଲାଯିବା ସହ ପ୍ରତ୍ୟେକ ଦିନ ସନ୍ଧ୍ୟାରେ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯିବ ବୋଲି ସୂଚନା ଦିଆଯାଇଛି । କଟକ ଜିଲ୍ଲାପାଳ ଜିଲ୍ଲାସ୍ତରୀୟ ବୈଠକ ଡାକି ଏହି କାର୍ଯ୍ୟକ୍ରମର ସୁପରିଚାଳନା ପାଇଁ ସମସ୍ତ ବ୍ୟବସ୍ଥା କରିବେ ବୋଲି ସ୍ଥିର ହୋଇଥିଲା ।

ସେହି ବୈଠକରେ କୃଷି ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ଗଗନ କୁମାର ଧଳ, ଉଦ୍ୟାନ ବିଭାଗର ନିର୍ଦ୍ଦେଶକ ଶ୍ରୀ ଏସ୍. ରଥ, କଟକ ଜିଲ୍ଲା ଅତିରିକ୍ତ ଜିଲ୍ଲାପାଳ ଶ୍ରୀ ଉଦୟନାଥ ନାୟକ, କଟେଜ ଇଣ୍ଡଷ୍ଟ୍ରିଜର ନିର୍ଦ୍ଦେଶକ ଶ୍ରୀ କେ.ବି. ମିଶ୍ର, ଶିଳ୍ପ ବିଭାଗର ଉପଶାସନ ସଚିବ ଶ୍ରୀ ବି.କେ. ବେହେରା, ପଞ୍ଚାୟତିରାଜ ବିଭାଗର ଉପଶାସନ ସଚିବ ଶ୍ରୀ ଏସ୍.ଆର୍. ପ୍ରଧାନ, ଖଦୀ ବୋର୍ଡ଼ ପକ୍ଷରୁ ଶ୍ରୀ ମନମୋହନ ରଥ, କୃଷି ବିଭାଗର ଯୁଗ୍ମ ନିର୍ଦ୍ଦେଶକ ଶ୍ରୀ ଏସ୍.କେ. ପଟେଲ ଓ ବୟନିକାର ଜେନେରାଲ ମ୍ୟାନେଜର ଶ୍ରୀ ଜି. ସାହୁ ପ୍ରମୁଖ ଯୋଗଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

# ପ୍ରଥମ ସ୍ୱାଧୀନତା ସଂଗ୍ରାମକୁ ଘେଁସ ଜମିଦାର ପରିବାରର ଅବଦାନ

ପବିତ୍ର ମୋହନ ବାରିକ

୧୮୫୭ ଖ୍ରୀଷ୍ଟାବ୍ଦର ଐତିହାସିକ ଗଣ ସଂଗ୍ରାମ ସାମ୍ରାଜ୍ୟବାଦୀ ଶକ୍ତି ଇଂରେଜମାନଙ୍କ ପ୍ରତି ଥିଲା ଶକ୍ତ ଆଘାତ । ଏହି ଘଟଣାର ସ୍ୱରୂପ ଓ ପ୍ରକୃତିକୁ ନେଇ ଗବେଷକ, ଐତିହାସିକ ଓ ବିଦ୍ୱାନମାନଙ୍କ ମଧ୍ୟରେ ମତଭେଦ ପ୍ରକାଶ ପାଇ ଆସିଥିଲା । ଏହି ଐତିହାସିକ ଘଟଣାର ୧୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ ଏହାକୁ ଭାରତୀୟ ପ୍ରଥମ ସ୍ୱାଧୀନତା ସଂଗ୍ରାମର ମାନ୍ୟତା ଓ ସ୍ୱୀକୃତି ପ୍ରଦାନ କରାଯାଇ ମହାସମାରୋହରେ ପାଳନ କରାଯାଇଅଛି । ଏହି ମହାନ୍ ଭାରତୀୟ ପ୍ରଥମ ସଂଗ୍ରାମରେ ଅବିଭକ୍ତ ସମ୍ବଲପୁର ଜିଲ୍ଲାର ଭୂମିକା ସର୍ବଦା ସ୍ମରଣୀୟ ।



ବୀରଶ୍ରେଷ୍ଠ ତଥା ଆଜନ୍ମ ବିପ୍ଳବୀ, ମହାନ ଦେଶ ଭକ୍ତ, ଜାତିପ୍ରେମୀ ସୁରେନ୍ଦ୍ର ସାଏଙ୍କୁ ଇଂରେଜମାନଙ୍କ ବିରୁଦ୍ଧରେ ଜୀବନବ୍ୟାପି ସଂଗ୍ରାମ ଚଳାଇବାକୁ ଏ ଅଞ୍ଚଳର ଅନେକ ଜମିଦାର, ଗୌନ୍ତିଆ ଓ ଗ୍ରାମ୍ୟ-ମୁଖ୍ୟମାନେ ନିରନ୍ତର, ନିଃସ୍ୱାର୍ଥପରଭାବେ ସମର୍ଥନ ଦେଇ ଆସୁଥିଲେ । ବରଗଡ଼ ଜିଲ୍ଲା ଅନ୍ତର୍ଗତ ଘେଁସର ଜମିଦାର ସଂଗ୍ରାମୀ ବୀର ଶହୀଦ ମାଧୋ ସିଂ ଥିଲେ ଏହି ରକ୍ତାକ୍ତ ବିପ୍ଳବର କର୍ଣ୍ଣଧାର ଓ ସଂଗ୍ରାମୀ ସୁରେନ୍ଦ୍ର ସାଏଙ୍କ ବିଶ୍ୱସ୍ତ ସହଯୋଗୀ । ଘେଁସ ଜମିଦାର ମାଧୋ ସିଂଙ୍କ ପରିବାରର ସମସ୍ତ ସଦସ୍ୟ ଏହି ଜାତୀୟ ଆନ୍ଦୋଳନରେ ଝାସ ଦେଇଥିଲେ । ବୀର ରକ୍ତରେ ଗଢ଼ା ଏହି ପରିବାରର ସଦସ୍ୟମାନଙ୍କର ସାହସ, ନିର୍ଭୀକତା ଓ ସ୍ୱାଭିମାନର ସ୍ୱାକ୍ଷର ଏକ ବିରଳ ଦୃଷ୍ଟାନ୍ତ । ମାଧୋ ସିଂ ଥିଲେ ବିଂଝାଲ ସଂପ୍ରଦାୟର ଜମିଦାର । ତାଙ୍କ ଅଧୀନରେ ଥିଲା ୨୫ ଖଣ୍ଡ ଗ୍ରାମ । ଜଣେ ପ୍ରଜାବତ୍ସଳ, ପରୋପକାରୀ ଓ ଉଦାରବାଦୀ ଜମିଦାର ଭାବରେ ତାଙ୍କର ଅନେକ ସୁଖ୍ୟାତି ଥିଲା ।

> ଘେଁସ ଜମିଦାର ମାଧୋ ସିଂଙ୍କ ପରିବାରର ସମସ୍ତ ସଦସ୍ୟ ଏହି ଜାତୀୟ ଆନ୍ଦୋଳନରେ ଝାସ ଦେଇଥିଲେ । ବୀର ରକ୍ତରେ ଗଢ଼ା ଏହି ପରିବାରର ସଦସ୍ୟମାନଙ୍କର ସାହସ, ନିର୍ଭୀକତା ଓ ସ୍ୱାଭିମାନର ସ୍ୱାକ୍ଷର ଏକ ବିରଳ ଦୃଷ୍ଟାନ୍ତ ।

ଇଂରେଜମାନଙ୍କର ଅନ୍ୟାୟ ଉପରେ ପର୍ଯ୍ୟବସିତ ନୀତିକୁ ସେ କୌଣସି ମତେ ସମର୍ଥନ କରିପାରିନଥିଲେ । ସମ୍ବଲପୁରର ତତ୍କାଳୀନ ଇଂରେଜ ଡେପୁଟି କମିଶନର ଡି.ଏଫ୍. କକବର୍ଣ୍ଣ ୩୫୬ ଟଙ୍କାର ରାଜସ୍ୱ ପ୍ରଦାନ କରିବା ନିମନ୍ତେ ଜମିଦାର ମାଧୋ ସିଂଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଜନପ୍ରିୟ ଜମିଦାର ମାଧୋ ସିଂ ଇଂରେଜ କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶକୁ ଅମାନ୍ୟ କରି ନିଜ ବିବେକ ଅନୁମୋଦିତ କାର୍ଯ୍ୟ କରିବାକୁ ପସନ୍ଦ କରିଥିଲେ । ସେ ଇଂରେଜମାନଙ୍କୁ ଖୁସି କରିବାକୁ ଯାଇ ପ୍ରାଣାଧିକ ପ୍ରଜାମାନଙ୍କ ଉପରେ ଅତ୍ୟଧିକ କର ଧାର୍ଯ୍ୟ କରିବାକୁ କେବେ ଉଚିତ୍ ମନେ କରୁନଥିଲେ । ତେଣୁ ଇଂରେଜମାନଙ୍କ ସହିତ ତାଙ୍କର ତୀବ୍ର ମନୋମାଳିନ୍ୟ ଆରମ୍ଭ ହେଲା । ଦ୍ୱିତୀୟତଃ ତାଙ୍କ ଜାମାତା ସୋନାଖାନାର ଜମିଦାର ନାରାୟଣ ସିଂଙ୍କୁ ଇଂରେଜମାନେ ନିର୍ମମ ଭାବରେ ହତ୍ୟା କରିଥିଲେ । ଅବିବେକୀ ଇଂରେଜ ସରକାରଙ୍କର ଏଭଳି ଜଘନ୍ୟ ଅପରାଧକୁ ସହ୍ୟ କରିବା ସ୍ୱାଧୀନଚେତା ମାଧୋ ସିଂଙ୍କ ପକ୍ଷରେ କେବେବି ସମ୍ଭବପର ନଥିଲା । ଏହାର ସମୁଚିତ ପ୍ରତିଶୋଧ ନେବା ପାଇଁ ଇଂରେଜମାନଙ୍କ ବିରୁଦ୍ଧରେ ଅସ୍ତ୍ରଧାରଣ କରିବାକୁ ସେ କେବେ ପଛଘୁଞ୍ଚା ଦେଇନଥିଲେ । ତୃତୀୟତଃ ବିପ୍ଳବର ଅଗ୍ନିଶିଖା ସମ୍ବଲପୁରରେ ଇଂରେଜ ବିରୋଧୀ ଆନ୍ଦୋଳନର ମହାନାୟକ ତଥା ଚୌହାଣ ବୀର ସୁରେନ୍ଦ୍ର ସାଏଙ୍କ ନ୍ୟାଯ୍ୟ ଦାବିପ୍ରତି ତାଚ୍ଛଲ୍ୟ ଭାବ ମାଧୋ ସିଂଙ୍କୁ ମର୍ମାହତ ଓ କ୍ଷୁବ୍ଧ କରିଥିଲା । ଏହାର ପ୍ରତିବାଦରେ ସେ ସୁରେନ୍ଦ୍ର ସାଏଙ୍କୁ ପୂର୍ଣ୍ଣ ସମର୍ଥନ ପ୍ରଦାନ କରି ଆସିଥିଲେ । ସୁରେନ୍ଦ୍ର ସାଏ ବନ୍ଦୀ ଅବସ୍ଥାରେ ଜେଲରେ କାଳାତିପାତ କରୁଥିଲେ । ବିଦ୍ରୋହୀମାନେ ସମ୍ବଲପୁରରେ ଇଂରେଜମାନଙ୍କୁ ପ୍ରବଳ ପ୍ରତିରୋଧ କରିବା ଓ ପ୍ରଚଣ୍ଡ ଆଘାତ ଦେବାରେ ସମର୍ଥ ହୋଇଥିଲେ । ସମ୍ବଲପୁରସ୍ଥ

ଇଂରେଜ କ୍ୟାପଟେନ ଆର୍.ଟି. ଲେଗ୍ ଓ କମିଶନର କକବର୍ଣ୍ଣ ସାହେବ ବିଦ୍ରୋହରେ ସୁରେନ୍ଦ୍ର ସାଏ ଓ ତାଙ୍କର ସହକର୍ମୀମାନଙ୍କୁ କୌଣସି ସାହାଯ୍ୟ ନ କରିବା ନିମନ୍ତେ ମାଧୋ ସିଂଙ୍କୁ ସତର୍କ କରାଇ ଦେଇଥିଲେ । ଯଦି ସେ ଏହା ଉଲଙ୍ଘନ କରନ୍ତି ଏହାର ଫଳାଫଳ ଅତ୍ୟନ୍ତ ଭୟଙ୍କର ହେବ ବୋଲି ଚେତାବନୀ ଦେଇଥିଲେ । କିନ୍ତୁ ମାଧୋ ସିଂ ଥିଲେ ନିର୍ବିକାର, ନିର୍ଲିପ୍ତ ଓ ଇଂରେଜ ସରକାରଙ୍କର ଏ ଧମକପୂର୍ଣ୍ଣ ମନ୍ତବ୍ୟ କେବେ ତାଙ୍କୁ ଭୟଭୀତ କରିପାରିନଥିଲା । ଏଥିରେ ତିଳେମାତ୍ର ବିଚଳିତ ନହୋଇ ମାଧୋ ସିଂ ନିଜ ସମର୍ଥକ ସତୀର୍ଥ ସଂଗ୍ରାମୀମାନଙ୍କ ସହିତ ମିଶି ସୁରେନ୍ଦ୍ର ସାଏଙ୍କୁ ସହଯୋଗ କରିବା ନିମନ୍ତେ ଆଗେଇ ଆସିଥିଲେ । ବୃଦ୍ଧ ବୟସରେ ମାଧୋ ସିଂଙ୍କ ଅମାପଶକ୍ତି, ଅସୀମ ସାହସ ଓ ଦୃଢ଼ ମନୋବଳ ଥିଲା ଅତୀବ ଆଚାର୍ଯ୍ୟଜନକ । ମାଧୋ ସିଂ ନିଜ ଦେଶଭକ୍ତ ପୁତ୍ର ହଟେ ସିଂ, କୁଞ୍ଜଲ ସିଂ, ବୈର ସିଂ ଓ ଐର ସିଂଙ୍କୁ ସଶସ୍ତ୍ର ସଂଗ୍ରାମରେ ସୁରେନ୍ଦ୍ର ସାଏଙ୍କୁ ସହଯୋଗ ପ୍ରଦାନ ନିମନ୍ତେ ସମ୍ବଲପୁର ପ୍ରେରଣ କରିଥିଲେ । ଏକ ବିରାଟ ଶୋଭାଯାତ୍ରାରେ ଯାଇ ସେମାନେ ସମ୍ବଲପୁରର ବ୍ରହ୍ମପୁରା ମନ୍ଦିରରେ ପହଞ୍ଚି ଇଂରେଜମାନଙ୍କର ଅତ୍ୟାଚାରର ଅବସାନ ନିମନ୍ତେ ଆମରଣ ସଂଗ୍ରାମ ପାଇଁ ବଜ୍ର ଶପଥ ଗ୍ରହଣ କରିଥିଲେ । ଏହି ଶୋଭାଯାତ୍ରାରେ ଏକ ପାଗଳ ହାତୀକୁ କୁଞ୍ଜଲ ସିଂ ଆୟତ୍ତ କରିଥିବାରୁ ସୁରେନ୍ଦ୍ର ସାଏ ତାଙ୍କୁ ଏକ ପଡ଼ା ଦାନ କରିଥିଲେ । ଏହା ବର୍ତ୍ତମାନ କୁଞ୍ଜଲପଡ଼ା ନାମରେ ପରିଚିତ । ବିଦ୍ରୋହୀମାନଙ୍କର ରଣହୁଙ୍କାର ଓ ଅତର୍କିତ ପ୍ରାଣମୂର୍ଚ୍ଛା ଆକ୍ରମଣରେ ଅତିଷ୍ଠ ହୋଇ ପ୍ରବଞ୍ଚନା ବିଦ୍ୟାରେ ଧୂରନ୍ଧର ଇଂରେଜମାନେ ଶଠତାର ଆଶ୍ରୟ ଦେବାକୁ କେବେ ପଛାଇ ନଥିଲେ । ସୁରେନ୍ଦ୍ର ସାଏଙ୍କୁ ତାଙ୍କ ନ୍ୟାଯ୍ୟ ଅଧିକାର ପ୍ରଦାନ କରିବେ ବୋଲି ଇଂରେଜମାନେ ମିଥ୍ୟା ପ୍ରତିଶ୍ରୁତି ପ୍ରଦାନ କଲେ । କିନ୍ତୁ ଇଂରେଜମାନେ ନିଜର ସ୍ଥିତି ସୁଦୃଢ଼ କରିବା ସୁରେନ୍ଦ୍ର ସାଏଙ୍କ ବିଦ୍ରୋହକୁ ସମୂଳେ ବିନାଶ କରିବା ନିମନ୍ତେ କଟକରୁ ଅଧିକ ସୈନ୍ୟ ଆଣିଥିଲେ । ଇଂରେଜମାନଙ୍କ ସହିତ ହୀନ ଚକ୍ରାନ୍ତର ସୂଚନା ପାଇ ସୁରେନ୍ଦ୍ର ସାଏ ଓ ତାଙ୍କର ବିଶ୍ୱସ୍ତ ଅନୁଗାମୀମାନେ ଖିଣ୍ଡା ଗ୍ରାମ ଅଭିମୁଖେ ଯାତ୍ରା କଲେ । ପୁନର୍ବାର ଅପୂର୍ବ ଉତ୍ସାହ ଓ ଉଦ୍ଦୀପନା ସହିତ ବିଦ୍ରୋହୀମାନେ ଇଂରେଜମାନଙ୍କର ମୁକାବିଲା କରିବା ପାଇଁ ସମସ୍ତ ଶକ୍ତି ବିନିଯୋଗ କରିଥିଲେ । ମାଧୋ ସିଂ ଓ ତାଙ୍କର ପୁତ୍ରମାନେ ସିଂଘୋଡ଼ା ଘାଟିର ଦାୟିତ୍ୱରେ ଥିଲେ । ସାମରିକ ଦୃଷ୍ଟିକୋଣରୁ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଘାଟି । ଏହି ଘାଟି ମଧ୍ୟଦେଇ ନାଗପୁର ଓ ରାୟପୁରରୁ ସୈନ୍ୟ ଓ ଗୋଳାବାରୁଦ ସମ୍ବଲପୁରକୁ ଇଂରେଜମାନେ ପଠାଇଥାନ୍ତି । ମାଧୋ ସିଂ ଓ ତାଙ୍କର ପୁତ୍ରମାନେ ଇଂରେଜମାନଙ୍କ ଆତଙ୍କ ସୃଷ୍ଟି କରିବାରେ ସମର୍ଥ ହୋଇଥିଲେ । ଏଥିରେ ଉତ୍‌କ୍ଷିପ୍ତ ଓ କ୍ରୋଧାନ୍ୱିତ ହୋଇ କେପ୍‌ଟେନ ମେଜର ଫରଷ୍ଟର ଘେଁସ ଗ୍ରାମରେ ଅଗ୍ନି ସଂଯୋଗ କରି ଗ୍ରାମଟିକୁ ସଂପୂର୍ଣ୍ଣ ଭସ୍ମୀଭୂତ କଲେ । ଘେଁସର ଦେଶପ୍ରାଣ ଅଧିବାସୀମାନେ ପ୍ରାୟ ସାତ ବର୍ଷ ପର୍ଯ୍ୟନ୍ତ ନିଘଞ୍ଚ ଅରଣ୍ୟରେ ହିଂସ୍ର ଜୀବଜନ୍ତୁଙ୍କ ସହିତ କାଳାତିପାତ କରିଥିଲେ । ସମ୍ବଲପୁରୀ ଲୋକଗୀତରେ ଏହି ବିଭତ୍ସ ଘଟଣାର କରୁଣ ଦୃଶ୍ୟ ସ୍ଥାନିତ ହୋଇଅଛି ।

‘ରିଶେ ମିଶେ ଆଇଲା ସାହେବ
ଘେଁସ ଦେଲା ପୁଡ଼ାଇ,
କିଏ ରହେଲା ଗାଁ ଗହଲି
କିଏ ରହେଲା ଝାରେ,
ଆଠେଁ ରକତ ବୁହିଗଲା
ଜାଇଫୁଲ - କରାପାଏନ ।’

ମାଧୋ ସିଂ ଇଂରେଜମାନଙ୍କୁ ବେନ୍ଦରା (ମାଙ୍କଡ଼) ବୋଲି ସମ୍ବୋଧନ କରି ସେମାନଙ୍କର କୁକାର୍ଯ୍ୟ ପାଇଁ ପ୍ରବଳ ଘୃଣା କରିଆସୁଥିଲେ । ତେଣୁ ଲୋକଗୀତରେ ଉଲ୍ଲେଖ ଅଛି -

‘ହାତୀ ସିଂ, କୁଞ୍ଜଲ ସିଂ, କାନ୍ଧରେ ଦୁହେଁ ଜୁଳି
ବେନ୍ଦରା ମାନ୍‌କେ ମାରି ଦେଲେ
ଆଏଁଖ ଚହଟା ଗୁଲି ।’

ମାଧୋ ସିଂଙ୍କର ଚତୁର୍ଥ ପୁତ୍ର ଐର ସିଂ ନିଜ ସମର୍ଥକମାନଙ୍କ ସହିତ ଜଙ୍ଗଲରେ ଅବସ୍ଥିତ ଏକ ଗୁମ୍ଫାରେ ‘ସାଇଦୁଲି’ରେ ଅବସ୍ଥାନ କରୁଥିଲେ । ଏହି ଗୁମ୍ଫା ମଧ୍ୟରେ ରହି ଅତ୍ୟାଚାରୀ ଇଂରେଜମାନଙ୍କୁ ପ୍ରଚଣ୍ଡ ଗରିଲା ଆକ୍ରମଣ କରୁଥିଲେ । ଇଂରେଜମାନେ ଏଥିରେ ଅତିଷ୍ଠ ହୋଇ ନିଜ ସମର୍ଥକ ଜାରିଙ୍ଗ ଗାଁର ଦାମ ଗଡ଼ତିଆକୁ ଐର ସିଂର ସନ୍ଧାନ ପାଇଁ ନିର୍ଦ୍ଦେଶ ଦେଲେ । ଦେଶ ଦ୍ରୋହୀ ଦାମ ଗଡ଼ତିଆ ଏହି ଜଘନ୍ୟ କାର୍ଯ୍ୟରେ ସନୁଭଟ ଓ ଫଗୁନୀ ଭଟନୀକୁ ନିୟୋଜିତ କରି ଶେଷରେ ସଫଳତା ପାଇଲା । ଐର ସିଂ ଆଶ୍ରୟ ନେଉଥିବା ସାଇଦୁଲିର ସନ୍ଧାନ ପାଇ ଏହାର ମୁହଁରେ ଇଂରେଜମାନେ ଅଗ୍ନି ସଂଯୋଗ କଲେ । ପରିଶେଷରେ ଐର ସିଂ ଏହି ଗୁମ୍ଫା ମଧ୍ୟରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ମାଧୋ ସିଂଙ୍କର ଅନ୍ୟତମ ଲଢୁଆ ପୁତ୍ର ହଟେ ସିଂ ନିଜ ସଂକଳ୍ପରୁ ନହଟି ସଂଗ୍ରାମକୁ ଅବ୍ୟାହତ ରଖିଥିଲେ । ଶେଷରେ ଇଂରେଜମାନଙ୍କ ହାତରେ ଧରାପଡ଼ି କଳାପାଣି ଦଣ୍ଡରେ ଦଣ୍ଡିତ ହେଲେ । ଘେଁସ ଅଞ୍ଚଳର ଲୋକଗୀତଗୁଡ଼ିକରେ ସେ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମର ଚିତ୍ର ପ୍ରତିଫଳିତ ହୁଏ -

‘ସାଇ ଦୁଲି ଲୁକି ଥିଲା ଅଇରି ସିଂହ ମଲା,
ନାଇଁ ହଟଲା ହଟେ ସିଂହ କଲା ପାଏନ୍ ଗଲା ।’

ମାଧୋ ସିଂ ତାଙ୍କର ପୁତ୍ରମାନେ ଦେଶ ମାତୃକାର ଆହ୍ୱାନକୁ ଭୁଲି ନପାରି ଇଂରେଜମାନଙ୍କୁ ଓ ତାଙ୍କର ସ୍ୱାର୍ଥପର ସମର୍ଥକମାନଙ୍କୁ ପ୍ରବଳ ଆକ୍ରମଣ କଲେ । ମାଧୋ ସିଂଙ୍କର ସୁପୁତ୍ର କୁଞ୍ଜଲ ସିଂ ଆକ୍ରମଣ କରି କେତେକ ଇଂରେଜମାନଙ୍କୁ ଆହତ ଓ ନିହତ କରିଥିଲେ । ଏହାର ଏକ ସୁନ୍ଦର ତଥା ହୃଦୟସ୍ପର୍ଶୀ ବର୍ଣ୍ଣନା ସମ୍ବଲପୁରୀ ଲୋକଗୀତରେ

ଦେଖାଯାଏ । ବର୍ତ୍ତମାନ ମଧ୍ୟ ଲୋକମାନଙ୍କ ମନରେ ଏହି ଗୀତ ଉଜ୍ଜୀବିତ ରହିଅଛି ।

'ଡୁକ୍‌ତା ଭାଙ୍ଗର ଗୁନ୍ ପିଲେ
ମାଗୁର ମାଛର ମୁଁଡ଼,
କୁଞ୍ଜଲ ସିଂହ ସାହେବ କେ ମାଇଲା
ଅଲୁ ପଡ଼ଲା ମୁଡ଼ ।'

କେପଟେନ ଇ.ଜି. ଉଡ୍ ସଂଗ୍ରାମୀ ବୀର ମାଧୋ ସିଂ ଓ ତାଙ୍କର ପୁତ୍ରମାନଙ୍କର ସଫଳ ଆକ୍ରମଣକୁ ସାମ୍ନା କରିପାରିନଥିଲେ । ୧୮୫୮ ଖ୍ରୀଷ୍ଟାବ୍ଦ ଜାନୁଆରୀରେ କେପଟେନ୍ ସେକ୍ସିପିୟର ଅଧିକ ସାମରିକ ବାହିନୀ ଓ ଅସ୍ତ୍ରଶସ୍ତ୍ର ଆଣି ସିଂଘୋଡ଼ା ଘାଟି ଆକ୍ରମଣ କଲେ । ଏହି ଆକ୍ରମଣକୁ ବିଦ୍ରୋହୀମାନେ ସାମ୍ନା କରିପାରିନଥିଲେ । ମାଧୋ ସିଂ ପାହଡ଼ ସିଂଘୋଡ଼ା ଘାଟିର ଦାୟିତ୍ୱରେ ଥିବା ସମୟରେ କେପ୍‌ଟେନ୍ ଉଡ଼ବ୍ରିଜ୍ ଆକ୍ରମଣ କରିଥିଲେ । ମାଧୋ ସିଂଙ୍କ ନିର୍ଣ୍ଣାୟକ ଓ ନିର୍ଭୁଲ ଆକ୍ରମଣରୁ କେପ୍‌ଟେନ୍ ନିଜକୁ ରକ୍ଷା କରିପାରିନଥିଲେ । ମାଧୋ ସିଂ ତାଙ୍କର ମସ୍ତକ ଛେଦନ କରି ଗୋଟିଏ ବୃକ୍ଷରେ ଝୁଲାଇ ଦେଇଥିଲେ । ଏହି ଆକ୍ରମଣରୁ ଦୁଇଜଣ ଇଂରେଜ ସୈନ୍ୟ ମହବତ ଖାଁ ଓ ମଥୁରା ପାଣ୍ଡେ ନିଜର ଜୀବନ ରକ୍ଷା କରିବାରେ ସମର୍ଥ ହୋଇଥିଲେ । ସମ୍ବଲପୁରର ନୂତନ କେପଟେନ୍ ଏନ୍.ସି. ବାରଲୋ ଅଧିକ ସଂଖ୍ୟକ ସୈନ୍ୟ ଆଣି ତା.୧୪.୧୨.୧୮୫୮ ରିଖରେ ପାହାଡ଼ ଶ୍ରୀଗିଡ଼ା ଘାଟିରେ ଝୁଲୁଥିବା କେପଟନ ଉଡ଼ବ୍ରିଜଙ୍କ କଟାମୁଣ୍ଡକୁ ଉଦ୍ଧାର କଲେ । ଏହାପରେ କେପଟନ ବାରଲୋ ମାଧୋ ସିଂ ଓ ତାଙ୍କର ଅନ୍ୟ ତିନିପୁତ୍ରଙ୍କୁ ଧରାଇ ଦେଲେ ୫ ଖଣ୍ଡ ଗ୍ରାମ ପୁରସ୍କାର ଦେବା ପାଇଁ ଘୋଷଣା କଲେ । ମାଧୋ ସିଂ କିଛି ଦିନ ବିଶ୍ରାମ ନେବାପାଇଁ ମାଟିଆ ଭାଟୀ ଗ୍ରାମକୁ ଯାଉଥିବା ସମୟରେ ଇଂରେଜମାନେ ତାଙ୍କୁ ବାଟରେ ଗିରଫ କଲେ । ତାଙ୍କର କୌଣସି ବିଚାର କରାନଯାଇ ସମ୍ବଲପୁରରେ ୧୮୫୮ ମସିହା ଡିସେମ୍ବର ୩୧ ତାରିଖରେ ଇଂରେଜମାନେ ତାଙ୍କୁ ଫାଶୀ ଦେଲେ । ତେଣୁ ବୀର ପୁରୁଷ ମାଧୋ ସିଂଙ୍କ ଏହି ବଳିଦାନ ଦିବସକୁ ଓଡ଼ିଆ ଜାତି ବୀରତା ଦିବସ ରୂପେ ପାଳନ କରୁଅଛି ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା

---

# ଜାନୁଆରୀ ଛବିଶ

ମନମୋହନ ଦାଶ

କାଲି ଆପଣ ଫେରିଯିବେ ।
ମାନେ ସବୁଦିନ ଲାଗି
ଛାଡ଼ି ଚାଲିଯିବେ ଏ ସହର
ଓ ଆପଣଙ୍କର ସବୁ କିଛି ।
କାମ କ୍ରୋଧ ମଦ ଲୋଭ
ପୁତ୍ର କନ୍ୟା ପତ୍ନୀ ପ୍ରଭୃତି
ଆପଣଙ୍କର ହସ ହସ
ଘଷିଲା ମାଜିଲା ଦେହ
ଆଉ ଯାହା ଯେମିତି ସବୁ ।
ଆପଣ କୋଉଠିକି ଯିବେ
ଜାଣନ୍ତି ନାହିଁ କାହିଁକି ଯିବେ
କାହା ସାଙ୍ଗରେ କେତେବେଳେ ଯିବେ ?
କିନ୍ତୁ ଯିବେ ।
ଏଇ ଫେରିବା କଥା
ଜାଣନ୍ତି ଆପଣ ବାଳୁତକାଳୁ
ଫେରିବା ଆତ୍ମୀୟଙ୍କୁ ଦେଖି
କାନ୍ଦ କାନ୍ଦ ଆଖିରେ ।
ଯୁକ୍ତିର ଶାଣିତ ଧାରରେ
କାଟି ପକାନ୍ତି ସେ
ପୁରୁଣା ସତ୍ୟର ପର ।
ସେଥିପାଇଁ ତ
କାହିଁକି ବଞ୍ଚିବେ
କାହିଁକି ମରିବେ
କ'ଣ କରିବେ ନ କରିବେ
ଜାଣନ୍ତି ନାହିଁ ଆପଣ ।
କ୍ରିକେଟ ଖେଳର ଛକା ଚଉକାପରି
ଆପଣଙ୍କ ହାତରୁ
ଖସି ଯାଉଛି ସମୟ
ସେଇ ପୁରୁଣା ସତ୍ୟର
ନକ୍ଷତ୍ର ମଣ୍ଡଳକୁ ।
ଥରେ ପଚାରନ୍ତୁ ଆପଣଙ୍କର
ରାଶି ନକ୍ଷତ୍ର ଓ ଲଗ୍ନକୁ
ସେଇ ପୁରୁଣା ପ୍ରଶ୍ନ
କିଏ ଆପଣ ?
କାଳେ ନୂଆ ଉତ୍ତରଟିଏ
ନୂଆ ସତ୍ୟଟିଏ ଆପଣ
ଖୋଜି ପାଇଯାଇ ପାରନ୍ତି
କମ୍ପ୍ୟୁଟର ମନିଟରରେ ।

ଅଧ୍ୟକ୍ଷ, ଗୋପ କଲେଜ
ଗୋପ, ପୁରୀ-୭୫୨୧୧୦

ଦେଖାଯାଏ । ବର୍ତ୍ତମାନ ମଧ୍ୟ ଲୋକମାନଙ୍କ ମନରେ ଏହି ଗୀତ ଉଜ୍ଜୀବିତ ରହିଅଛି ।

'ଡୁକ୍ତା ଭାଙ୍ଗର ଗୁନ୍ ପିଲେ
ମାଗୁର ମାଛର ମୁଁଡ଼,
କୁଞ୍ଜଲ ସିଂହ ସାହେବ କେ ମାଇଲା
ଅଲୁ ପଡ଼ଲା ମୁଡ଼ ।'

କେପଟେନ ଇ.ଜି. ଉଡ୍ ସଂଗ୍ରାମୀ ବୀର ମାଧୋ ସିଂ ଓ ତାଙ୍କର ପୁତ୍ରମାନଙ୍କର ସଫଳ ଆକ୍ରମଣକୁ ସାମ୍ନା କରିପାରିନଥିଲେ । ୧୮୫୮ ଖ୍ରୀଷ୍ଟାବ୍ଦ ଜାନୁଆରୀରେ କେପଟେନ୍ ସେକ୍ସିପିୟର ଅଧିକ ସାମରିକ ବାହିନୀ ଓ ଅସ୍ତ୍ରଶସ୍ତ୍ର ଆଣି ସିଂଘୋଡ଼ା ଘାଟି ଆକ୍ରମଣ କଲେ । ଏହି ଆକ୍ରମଣକୁ ବିଦ୍ରୋହୀମାନେ ସାମ୍ନା କରିପାରିନଥିଲେ । ମାଧୋ ସିଂ ପାହଡ଼ ସିଂଘୋଡ଼ା ଘାଟିର ଦାୟିତ୍ୱରେ ଥିବା ସମୟରେ କେପ୍‌ଟେନ୍ ଉଡ୍‌ବ୍ରିଜ୍ ଆକ୍ରମଣ କରିଥିଲେ । ମାଧୋ ସିଂଙ୍କ ନିର୍ଣ୍ଣାୟକ ଓ ନିର୍ଭୁଲ ଆକ୍ରମଣରୁ କେପ୍‌ଟେନ୍ ନିଜକୁ ରକ୍ଷା କରିପାରିନଥିଲେ । ମାଧୋ ସିଂ ତାଙ୍କର ମସ୍ତକ ଛେଦନ କରି ଗୋଟିଏ ବୃକ୍ଷରେ ଝୁଲାଇ ଦେଇଥିଲେ । ଏହି ଆକ୍ରମଣରୁ ଦୁଇଜଣ ଇଂରେଜ ସୈନ୍ୟ ମହବତ ଖାଁ ଓ ମଥୁରା ପାଣ୍ଡେ ନିଜର ଜୀବନ ରକ୍ଷା କରିବାରେ ସମର୍ଥ ହୋଇଥିଲେ । ସମ୍ବଲପୁରର ନୂତନ କେପଟେନ୍ ଏନ୍.ସି. ବାରଲୋ ଅଧିକ ସଂଖ୍ୟକ ସୈନ୍ୟ ଆଣି ତା.୧୪.୧୨.୧୮୫୮ ରିଖରେ ପାହାଡ଼ ଶ୍ରୀଗିଡ଼ା ଘାଟିରେ ଝୁଲୁଥିବା କେପଟନ ଉଡ୍‌ବ୍ରିଜଙ୍କ କଟାମୁଣ୍ଡକୁ ଉଦ୍ଧାର କଲେ । ଏହାପରେ କେପଟନ ବାରଲୋ ମାଧୋ ସିଂ ଓ ତାଙ୍କର ଅନ୍ୟ ତିନିପୁତ୍ରଙ୍କୁ ଧରାଇ ଦେଲେ ୫ ଖଣ୍ଡ ଗ୍ରାମ ପୁରସ୍କାର ଦେବା ପାଇଁ ଘୋଷଣା କଲେ । ମାଧୋ ସିଂ କିଛି ଦିନ ବିଶ୍ରାମ ନେବାପାଇଁ ମାଟିଆ ଭାଟୀ ଗ୍ରାମକୁ ଯାଉଥିବା ସମୟରେ ଇଂରେଜମାନେ ତାଙ୍କୁ ବାଟରେ ଗିରଫ କଲେ । ତାଙ୍କର କୌଣସି ବିଚାର କରାନଯାଇ ସମ୍ବଲପୁରରେ ୧୮୫୮ ମସିହା ଡିସେମ୍ବର ୩୧ ତାରିଖରେ ଇଂରେଜମାନେ ତାଙ୍କୁ ଫାଶୀ ଦେଲେ । ତେଣୁ ବୀର ପୁରୁଷ ମାଧୋ ସିଂଙ୍କ ଏହି ବଳିଦାନ ଦିବସକୁ ଓଡ଼ିଆ ଜାତି ବୀରତା ଦିବସ ରୂପେ ପାଳନ କରୁଅଛି ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା

---

# ଜାନୁଆରୀ ଛବିଶ

ମନମୋହନ ଦାଶ

କାଲି ଆପଣ ଫେରିଯିବେ ।
ମାନେ ସବୁଦିନ ଲାଗି
ଛାଡ଼ି ଚାଲିଯିବେ ଏ ସହର
ଓ ଆପଣଙ୍କର ସବୁ କିଛି ।
କାମ କ୍ରୋଧ ମଦ ଲୋଭ
ପୁତ୍ର କନ୍ୟା ପତ୍ନୀ ପ୍ରଭୃତି
ଆପଣଙ୍କର ହସ ହସ
ଘଷିଲା ମାଜିଲା ଦେହ
ଆଉ ଯାହା ଯେମିତି ସବୁ ।
ଆପଣ କୋଉଠିକି ଯିବେ
ଜାଣନ୍ତି ନାହିଁ କାହିଁକି ଯିବେ
କାହା ସାଙ୍ଗରେ କେତେବେଳେ ଯିବେ ?
କିନ୍ତୁ ଯିବେ ।
ଏଇ ଫେରିବା କଥା
ଜାଣନ୍ତି ଆପଣ ବାଳୁତକାଳୁ
ଫେରିବା ଆତ୍ମୀୟଙ୍କୁ ଦେଖି
କାନ୍ଦ କାନ୍ଦ ଆଖିରେ ।
ଯୁକ୍ତିର ଶାଣିତ ଧାରରେ
କାଟି ପକାନ୍ତି ସେ
ପୁରୁଣା ସତ୍ୟର ପର ।
ସେଥିପାଇଁ ତ
କାହିଁକି ବଞ୍ଚିବେ
କାହିଁକି ମରିବେ
କ'ଣ କରିବେ ନ କରିବେ
ଜାଣନ୍ତି ନାହିଁ ଆପଣ ।
କ୍ରିକେଟ ଖେଳର ଛକା ଚଉକାପରି
ଆପଣଙ୍କ ହାତରୁ
ଖସି ଯାଉଛି ସମୟ
ସେଇ ପୁରୁଣା ସତ୍ୟର
ନକ୍ଷତ୍ର ମଣ୍ଡଳକୁ ।
ଥରେ ପଚାରନ୍ତୁ ଆପଣଙ୍କର
ରାଶି ନକ୍ଷତ୍ର ଓ ଲଗ୍ନକୁ
ସେଇ ପୁରୁଣା ପ୍ରଶ୍ନ
କିଏ ଆପଣ ?
କାଳେ ନୂଆ ଉତ୍ତରଟିଏ
ନୂଆ ସତ୍ୟଟିଏ ଆପଣ
ଖୋଜି ପାଇଯାଇ ପାରନ୍ତି
କମ୍ପ୍ୟୁଟର ମନିଟରରେ ।

ଅଧ୍ୟକ୍ଷ, ଗୋପ କଲେଜ
ଗୋପ, ପୁରୀ-୭୫୨୧୧୦

# ଖୋରଧାର ପାଇକ ବିଦ୍ରୋହ

ବ୍ରଜ ପାଇକରାୟ

**ଇଂ**ରେଜ କମିଶନର ମିଃ ଇଓୟର ସାହେବ ଖୋରଧା ପାଇକମାନଙ୍କ ସମ୍ବନ୍ଧରେ ତାଙ୍କ ୧୮୧୮ ମସିହା ରିପୋର୍ଟରେ ଲେଖିଛନ୍ତି, 'ଖୋରଧାରେ ଆଉ ପାଇକମାନଙ୍କ ସାହାଯ୍ୟ ଦରକାର ହେଉନାହିଁ । ସୈନ୍ୟ ବିଭାଗରେ ସେମାନଙ୍କୁ ରଖିବା ବିପଜ୍ଜନକ । ଅତଏବ ତାଙ୍କୁ ସାଧାରଣ ରୟତଙ୍କ ସ୍ତରକୁ ପେଲି ଦେଇ ତାଙ୍କଠାରୁ ଖଜଣା ଅସୁଲ କରିବା ଦରକାର । ପାଇକମାନଙ୍କୁ ପୂର୍ବର ଜାଗିର ଜମି ଦିଆଯିବା ଉଚିତ ନୁହେଁ । ଏଇ ଅଳ୍ପ ସମୟ ମଧ୍ୟରେ ପାଇକ ନାମ ଲୋପ ହୋଇ ଆସିଲାଣି । କିନ୍ତୁ ଏବେ ମଧ୍ୟ ଯେଉଁଠାରେ ପାଇକ ଅଛନ୍ତି ସେମାନେ ପୂର୍ବର ଦୁର୍ଦ୍ଦାନ୍ତ ସ୍ୱଭାବ ଛାଡ଼ି ନାହାନ୍ତି । ସେମାନଙ୍କ ବିଷଦାନ୍ତ ଭାଙ୍ଗିବା ପାଇଁ ପୋଲିସ୍ କର୍ମଚାରୀଙ୍କୁ ଅନେକ କାଳ ସେମାନଙ୍କୁ ଜବତରେ ରଖିବାକୁ ପଡ଼ିବ । ପାଇକ କୁଳକୁ ସମୂଳେ ଧ୍ୱଂସ ନ କଲେ ମଂଗଳ ନାହିଁ ।'

ବିଶିଷ୍ଟ ଇଂରେଜ ଐତିହାସିକ ଜି. ଟୟନବୀ ଖୋରଧା ପାଇକ ବିଦ୍ରୋହର ପ୍ରଚଣ୍ଡତା ସମ୍ବନ୍ଧରେ ମଧ୍ୟ ଉଲ୍ଲେଖ କରି ଲେଖିଛନ୍ତି ।


ଜୟୀ ରାଜଗୁରୁ    ବକ୍ସି ଜଗବନ୍ଧୁ

ବ୍ରିଟିଶ ସରକାର ପାଇକ ବିଦ୍ରୋହକୁ କିଭଳି ଭୟ କରୁଥିଲେ ଏବଂ ପାଇକ ବିଦ୍ରୋହ ଫଳରେ ଓଡ଼ିଶାରେ ବ୍ରିଟିଶ ସାମ୍ରାଜ୍ୟର ମୂଳଦୁଆ କିପରି ଦୋହଲି ଯାଇଥିଲା ତାହା ଉପରୋକ୍ତ ଉଦ୍ଧୃତାଂଶରୁ ସ୍ପଷ୍ଟ ରୂପେ ପ୍ରତୀୟମାନ ହୁଏ ।

ବିଦେଶୀ ବ୍ରିଟିଶମାନଙ୍କ ଦୃଷ୍ଟିରେ ଯାହା ପାଇକମାନଙ୍କ ବିଦ୍ରୋହ ଭାବରେ ଇତିହାସରେ ଲିପିବଦ୍ଧ ହୋଇଛି ପ୍ରକୃତ ପକ୍ଷରେ ତାହା ଓଡ଼ିଆ ଜାତିର ସ୍ୱାଭିମାନ ଏବଂ ଆତ୍ମମର୍ଯ୍ୟାଦାବୋଧର ପରିପ୍ରକାଶ । ୧୮୫୭ ମସିହା ସିପାହୀ ବିଦ୍ରୋହର ବହୁପୂର୍ବରୁ ଅର୍ଥାତ୍ ୧୮୧୭ ମସିହାରେ ସଂଗଠିତ ଉକ୍ତ ବିଦ୍ରୋହ ସମଗ୍ର ଭାରତବର୍ଷର ପ୍ରଥମ ଗଣବିପ୍ଳବ ଓ ସ୍ୱାଧୀନଚେତା ପାଇକମାନଙ୍କର ବୀରତ୍ୱର ଅଲିଭା କାହାଣୀ ବୋଲି କହିବା ଅଧିକ ଠିକ୍ ହେବ ।

## ପାଇକ ବିଦ୍ରୋହର ପୃଷ୍ଠଭୂମି

ଇଂରେଜମାନେ ଓଡ଼ିଶା ଦଖଲ କରିବା ପୂର୍ବରୁ ଉତ୍ତରରେ ସମଗ୍ର ବଙ୍ଗଦେଶ ଏବଂ ଦକ୍ଷିଣରେ ଦକ୍ଷିଣ ସରକାର ଓଡ଼ିଆ ଜିଲ୍ଲା ଗଞ୍ଜାମ ମଧ୍ୟ ସେମାନଙ୍କର ଅଧୀନସ୍ଥ ହୋଇ ସାରିଥିଲା । ତେଣୁ ଇଂରେଜମାନେ ଓଡ଼ିଶାକୁ ତିନି ଦିଗରୁ ଆକ୍ରମଣ କରିବା ସହଜ ହୋଇଥିଲା । ମାନ୍ଦ୍ରାଜରୁ ଇଂରେଜ ବାହିନୀ ୧୮୦୩ ମସିହା ସେପ୍ଟେମ୍ବର ୮ ତାରିଖରେ ବାହାରି ମାଣିକ ପାଟଣା ବାଟ ଦେଇ ୧୬ ତାରିଖରେ ପୁରୀରେ ପହଞ୍ଚିଲେ । ମରହଟ୍ଟାଙ୍କ ତରଫରୁ ସେ ଅଞ୍ଚଳରେ ନିଯୁକ୍ତ ହୋଇଥିବା ଜଗୁଆଳୀ ମାଲୁଦର ଫତେ ମହମ୍ମଦଙ୍କ ସହାୟତାକ୍ରମେ କର୍ଣ୍ଣେଲ ହାରକୋର୍ଟ ଚିଲିକା ମୁହାଣ ପାରି ହୋଇ ଦୁଇଦିନ ପରେ ନରସିଂହ ପାଟଣାରେ ପହଞ୍ଚିଲେ । ସେଠାରେ ଏବଂ ପୁରୀ ଅଧିକାର ବେଳେ ଇଂରେଜମାନେ କୌଣସି ପ୍ରକାର ପ୍ରତିରୋଧର ସମ୍ମୁଖୀନ ହୋଇ ନଥିଲେ । ପୁରୀର ଜଗନ୍ନାଥ ମନ୍ଦିରକୁ ଦଖଲ କରି କେତେ ଜଣ ହିନ୍ଦୁ ସିପାହୀଙ୍କ ଦାୟିତ୍ୱରେ ଛାଡ଼ି ଦେଇ କର୍ଣ୍ଣେଲ ହାରକୋଟ୍ କଟକ ଯାତ୍ରା କରିଥିଲେ । ଅଠରନଳା ପାଖରେ ମରହଟ୍ଟାମାନଙ୍କ ସାମାନ୍ୟ ପ୍ରତିରୋଧ ଏବଂ ଜଗନ୍ନାଥ ସଡ଼କରେ ସେମାନଙ୍କର ଆକ୍ରମଣକୁ ପ୍ରତିହତ କରି ଇଂରେଜ ସୈନ୍ୟମାନେ କଟକ ଆଡ଼କୁ ଅଗ୍ରସର ହେଲେ । ଇଂରେଜମାନଙ୍କଠାରୁ ପରାଜିତ ହୋଇ ମରହଟ୍ଟାମାନେ ଖୋରଧା ଜଙ୍ଗଲ ଅଞ୍ଚଳକୁ ପଳାଇଗଲେ । କର୍ଣ୍ଣେଲ ହାରକୋଟ୍ ବାରଙ୍ଗଗଡ଼ ଦେଇ କାଠଯୋଡ଼ି ନଦୀ ପାର ହୋଇ କଟକରେ ପହଞ୍ଚିଲେ ।

ବଙ୍ଗଳାରୁ କ୍ୟାପ୍ଟେନ ମୋରଗାନଙ୍କ ନେତୃତ୍ୱରେ ଦଳେ ଇଂରେଜ ସୈନ୍ୟ ବାଲେଶ୍ୱର ସମୁଦ୍ର ଉପକୂଳବର୍ତ୍ତୀ ଜାମପଡ଼ାଠାରେ ଜାହାଜରୁ ଓହ୍ଲାଇ ମରହଟ୍ଟାମାନଙ୍କ ଦୁର୍ଗ ଅଧିକାର କରି ବାଲେଶ୍ୱର

ଦଖଲ କଲେ । ଅନ୍ୟ ଦଳେ ଇଂରେଜ ସୈନ୍ୟ କର୍ଣ୍ଣେଲ ଫର୍ଗୁସନଙ୍କ ନେତୃତ୍ୱରେ ମେଦିନପୁର ବାଟେ ଆସି ବାଲେଶ୍ୱରରେ ଥିବା ଇଂରେଜ ସୈନ୍ୟମାନଙ୍କ ସହ ମିଶିଲେ । ଉକ୍ତ ମିଳିତ ବାହିନୀ ବାଲେଶ୍ୱରରୁ ବାହାରି କଟକରେ କର୍ଣ୍ଣେଲ ହାରକୋର୍ଟଙ୍କ ସୈନ୍ୟମାନଙ୍କ ସହ ମିଶି ବାରବାଟୀ ଦୁର୍ଗ ଦଖଲ କଲେ ।

ଏଇଭଳି ଭାବରେ ୧୮୦୩ ମସିହାରେ ଓଡ଼ିଶା ଦଖଲ କରିବା ପରେ କର୍ଣ୍ଣେଲ ହାରକୋଟ ଓ ମିଃ ମେଲଭିଲ୍ ଓଡ଼ିଶା ସୁବାର ଶାସନକର୍ତ୍ତା ଭାବରେ ନିଯୁକ୍ତି ପାଇ ଗଡ଼ଜାତ ରାଜା ଓ ଜମିଦାରମାନଙ୍କଠାରୁ ଚୁକ୍ତିପତ୍ର ସ୍ୱାକ୍ଷର କରି ଦେଲେ । ଓଡ଼ିଶାର ବିଭିନ୍ନ ଗଡ଼ଜାତ ରାଜାମାନଙ୍କ ସହିତ ଚୁକ୍ତି କରି ସାରିବା ପରେ କମ୍ପାନୀ ସରକାର ସମଗ୍ର ଦେଶ ଉପରେ ମାଲିକ ହୋଇ ଯାଇଥିଲେ ।

୧୮୦୪ ମସିହାରେ ଖୋରଧାର ବରୁଣେଇ ପାହାଡ଼ ନିକଟରେ ଥିବା ଦୁର୍ଗକୁ ବ୍ରିଟିଶମାନେ ତିନି ସପ୍ତାହ ଧରି ଅବରୋଧ କରି ତୋପ ମାଡ଼ରେ ଗଡ଼କୁ ଭୂତଳଶାୟୀ କଲେ ଏବଂ ଖୋରଧା ରାଜା ଦ୍ୱିତୀୟ ମୁକୁନ୍ଦ ଦେବଙ୍କୁ ଗାଦିଚ୍ୟୁତ କରି ବିଦ୍ରୋହୀ ବୋଲି ଘୋଷଣା କଲେ । ପରିଶେଷରେ ରାଜା ମୁକୁନ୍ଦ ଦେବ ତାଙ୍କର ପ୍ରଧାନ ରାଜନୈତିକ ପରାମର୍ଶଦାତା ଜୟୀ ରାଜଗୁରୁଙ୍କ ପ୍ରରୋଚନାକ୍ରମେ ବିଦ୍ରୋହ ହୋଇଛି ବୋଲି ବ୍ରିଟିଶ୍‌ମାନଙ୍କୁ ଦେଇଥିବା ପ୍ରାର୍ଥନାପତ୍ରରେ ଜଣାଇବା ପରେ ତାଙ୍କୁ ମେଦିନପୁର ଜେଲରୁ ମୁକ୍ତି ଦିଆଗଲା ଏବଂ ପୁରୀ ଜଗନ୍ନାଥ ମନ୍ଦିର ପରିଚାଳନା ଦାୟିତ୍ୱ ଅର୍ପଣ କରାଗଲା । ଜୟୀ ରାଜଗୁରୁ ଇଂରେଜମାନଙ୍କୁ ରୋକ୍‌ଠୋକ୍ ଜବାବ୍ ଦେଇଥିବାରୁ ମେଦିନୀପୁର ବାଘିତୋଟାରେ ବରଗଛର ଦୁଇଡାଳରେ ତାଙ୍କର ଦୁଇ ଗୋଡ଼କୁ ବାନ୍ଧି ଛାଡ଼ି ଦିଆଯାଇଥିଲା । ଫଳରେ ରାଜଗୁରୁଙ୍କ ଶରୀର ଦୁଇଫାଳ ହୋଇ ଯାଇଥିଲା । ଜୟୀ ରାଜଗୁରୁଙ୍କ ପୈଶାଚିକ ହତ୍ୟା ପାଇକମାନଙ୍କୁ ବିଶେଷ କ୍ଷୁବ୍‌ଧ କରିଥିଲା ଏବଂ ସେମାନଙ୍କ ମଧ୍ୟରେ ବ୍ରିଟିଶ ବିରୋଧୀ ମନୋଭାବ ସୃଷ୍ଟି ହେବାରେ ସହାୟକ ହୋଇଥିଲା ।

ଜୟୀ ରାଜଗୁରୁ ଇଂରେଜମାନଙ୍କୁ ରୋକ୍‌ଠୋକ୍ ଜବାବ୍ ଦେଇଥିବାରୁ ମେଦିନୀପୁର ବାଘିତୋଟାରେ ବରଗଛର ଦୁଇଡାଳରେ ତାଙ୍କର ଦୁଇ ଗୋଡ଼କୁ ବାନ୍ଧି ଛାଡ଼ି ଦିଆଯାଇଥିଲା । ଫଳରେ ରାଜଗୁରୁଙ୍କ ଶରୀର ଦୁଇଫାଳ ହୋଇ ଯାଇଥିଲା । ଜୟୀ ରାଜଗୁରୁଙ୍କ ପୈଶାଚିକ ହତ୍ୟା ପାଇକମାନଙ୍କୁ ବିଶେଷ କ୍ଷୁବ୍‌ଧ କରିଥିଲା ଏବଂ ସେମାନଙ୍କ ମଧ୍ୟରେ ବ୍ରିଟିଶ ବିରୋଧୀ ମନୋଭାବ ସୃଷ୍ଟି ହେବାରେ ସହାୟକ ହୋଇଥିଲା ।

## ପାଇକ ବିଦ୍ରୋହର ଅର୍ଥନୈତିକ ଓ ସାମାଜିକ କାରଣ

ପାଇକମାନଙ୍କ ନିଷ୍କର ଜାଗିର ଉପରେ କରଧାର୍ଯ୍ୟ ଘନ ଘନ ବନ୍ଦୋବସ୍ତ ଫଳରେ କରବୃଦ୍ଧି ଓ ଖଜଣା ଅନାଦେୟରେ ଜମି ନିଲାମ, କଉଡ଼ି ପରିବର୍ତ୍ତେ ଟଙ୍କା ଆକାରରେ ଖଜଣା ଗ୍ରହଣ ପାଇକମାନଙ୍କ ସ୍ୱାଧୀନଚେତା ମନୋବୃତ୍ତି ଏବଂ ମର୍ଯ୍ୟାଦାପୂର୍ଣ୍ଣ ସାମାଜିକ ଚଳନୀ ସମ୍ବନ୍ଧରେ ଇଂରେଜ କର୍ମଚାରୀମାନଙ୍କ ଅଜ୍ଞତା ଏବଂ ସର୍ବୋପରି ଇଂରେଜ ପଦସ୍ଥ ଅଫିସର ଓ ଅଧସ୍ତନ ବଙ୍ଗଳା ଅମଲାମାନଙ୍କ ଅର୍ଥନୈତିକ ଘୋଷଣା ଓ ଜୁଲମ୍ ଯୋଗୁଁ ହିଁ ପାଇକ ବିଦ୍ରୋହ ସଂଗଠିତ ହୋଇଥିଲା । ବକ୍ସି ଜଗବନ୍ଧୁଙ୍କଠାରୁ ଅନ୍ୟାୟ ଭାବେ ଇଂରେଜମାନଙ୍କ ଜମିଦାରୀ ଉଚ୍ଛେଦ ଫଳରେ ହିଁ ଉକ୍ତ ବିଦ୍ରୋହ ତ୍ୱରାନ୍ୱିତ ହୋଇଥିଲା । ଖୋରଧା ଖାସ୍ ମାହାଲରେ ପରିଣତ ହେବା ପରେ ପାଇକମାନେ ଆବହମାନ କାଳରୁ ଭୋଗ କରୁଥିବା ନିଷ୍କର ଜାଗିର ଜମିକୁ ମେଜର ଫ୍ଲେଚର୍ ଛଡ଼ାଇ ନେଲେ । ୧୮୦୫ ଓ ୧୮୧୭ ମସିହା ମଧ୍ୟରେ ବାରମ୍ୱାର ଭୂ-ବନ୍ଦୋବସ୍ତ କରାଯାଇ ନୂତନ କରଧାର୍ଯ୍ୟ କରାଯାଇଥିଲା । ସେ ସମ୍ବନ୍ଧରେ ତତ୍କାଳୀନ କଟକ କଲେକ୍ଟରଙ୍କ ରିପୋର୍ଟ ପ୍ରଣିଧାନଯୋଗ୍ୟ ।

ପାଇକ ବିଦ୍ରୋହର କାରଣ ସମ୍ବନ୍ଧରେ ଏକ ରିପୋର୍ଟ ପ୍ରସ୍ତୁତ କରିବା ନିମିତ୍ତ ନିଯୁକ୍ତ ଇନ୍‌କ୍ୱାରୀ କମିଶନର ଡବ୍ଲୁ. ଇଓ୍ୱେର୍ ଖୋରଧା ଅଞ୍ଚଳରେ ଭୂରାଜସ୍ୱ ବୃଦ୍ଧି କିଭଳି ଖୁବ୍ କମ୍ ସମୟ ମଧ୍ୟରେ ଆକାଶଛୁଆଁ ହୋଇଥିଲା ସେ ସମ୍ବନ୍ଧରେ ବିବରଣୀ ଦେଇଛନ୍ତି ।

ସେତେବେଳେ ଓଡ଼ିଶାରେ ମୁଖ୍ୟତଃ ବଙ୍ଗାଳୀ ମାନେ ବ୍ରିଟିଶ ସରକାରଙ୍କ ଅଧସ୍ତନ କର୍ମଚାରୀ ଥିଲେ । ଇଂରେଜମାନେ ବଙ୍ଗାଳୀମାନଙ୍କ ଉପରେ ନିର୍ଭର କରି ଶାସନ କାର୍ଯ୍ୟ କରୁଥିବାରୁ ତାହାର ସୁବିଧା ନେଇ ସେମାନେ ପ୍ରଜାମାନଙ୍କ ଉପରେ ନିର୍ଭର କରି ଆଦାୟ ନାମରେ ଜୁଲମ୍ ଓ ଅତ୍ୟାଚାର କରୁଥିଲେ ।

ଇଂରେଜ ରାଜତ୍ୱ ପୂର୍ବରୁ ଭୂରାଜସ୍ୱ ଶସ୍ୟ କିମ୍ବା କଉଡ଼ି ଆକାରରେ ଦିଆଯାଉଥିଲା । ହେଲେ ଇଂରେଜ ଶାସନ ଅମଳରେ କଉଡ଼ି ପ୍ରତିବଦଳରେ ଭୂରାଜସ୍ୱ ଟଙ୍କା ଆକାରରେ ଗ୍ରହଣ କରାଗଲା । ଗୋଟିଏ ଟଙ୍କାର ମୂଲ୍ୟ ୫୧୨୦ଟି କଉଡ଼ି ରୂପେ ସ୍ଥିର କରାଗଲା । ଗାଁ ମହାଜନଙ୍କଠାରେ କଉଡ଼ି ବଦଳାଇ ନେଲେ ପ୍ରତି ଟଙ୍କା ପିଛା ୭୨୮୦ଟି କଉଡ଼ି ସାଧାରଣ ଲୋକଙ୍କୁ ଦେବାକୁ ପଡୁଥିଲା । ଏତଦ୍‌ବ୍ୟତୀତ ସରକାର ଏବଂ ରାଜସ୍ୱ ଆଦାୟକାରୀ କର୍ମଚାରୀମାନଙ୍କ ବଟି ଆଦାୟ ମଧ୍ୟ ଥିଲା । ସରକାରଙ୍କ ନୂତନ ରାଜସ୍ୱ ନୀତି ଓ ନିୟମ ଯୋଗୁଁ ନିଷ୍କର ବୃତ୍ତିଭୋଗୀ ପାଇକମାନେ ବିଶେଷ କ୍ଷତିଗ୍ରସ୍ତ ହେଲେ ଏବଂ ସେମାନଙ୍କର ଅର୍ଥନୈତିକ ପରିସ୍ଥିତି ବିଶେଷ ଖରାପ ଆଡ଼କୁ ଗତି କଲା । ରାଜସ୍ୱ ଦେଇ ନପାରି ଅନେକ ରୟତ ଜମି ହରାଇଲେ । ଗଭର୍ଣ୍ଣର ଜେନେରାଲ ଲର୍ଡ଼ ଓ୍ୱେଲସଲି ଓଡ଼ିଶାରେ ବଙ୍ଗ ପ୍ରଦେଶ ପରି ୧୮୧୫ ମସିହାରେ ଚିରସ୍ଥାୟୀ ବନ୍ଦୋବସ୍ତ କରିବା ପାଇଁ ଘୋଷଣା କରିଥିଲେ ମଧ୍ୟ ବାରମ୍ବାର ଭୂବନ୍ଦୋବସ୍ତ କରାଯାଇ କରବୃଦ୍ଧି କରାଯାଇଥିଲା ।

ରାଜାଙ୍କ ଶାସନ ସମୟରେ ରାଜକର୍ମଚାରୀ ଖଜଣା ବାକି ଯୋଗୁଁ ଅତ୍ୟାଚାର କଲେ । ସଂପୃକ୍ତ ପ୍ରଜାଗଣ ଆପତ୍ତି ଅଭିଯୋଗ କରି ନ୍ୟାୟ ବିଚାର ପାଉଥିଲେ । ହେଲେ ଇଂରେଜ ଶାସନ ଅମଳରେ ଅଣଓଡ଼ିଆ କର୍ମଚାରୀମାନେ କୌଣସି ଅଭିଯୋଗ ଶୁଣିବା ପରିବର୍ତ୍ତେ ୧୮୦୬ ମସିହାରେ ଖଜଣା ଅନାଦେୟରେ ସଂପତ୍ତି ନିଲାମ ପ୍ରଥା ସୃଷ୍ଟି କରାଗଲା । ଓଡ଼ିଶାର ଜମିଦାରୀ କଲିକତାଠାରେ ନିଲାମ ହେବା ଯୋଗୁଁ ଖଜଣା ଠିକ୍ ସମୟରେ ପଇଠ କରିନପାରି ବହୁ ଓଡ଼ିଆ ସମ୍ଭ୍ରାନ୍ତ ପରିବାର ତଳିତଳାନ୍ତ ହୋଇଗଲେ । ଅନ୍ୟପକ୍ଷରେ କଲିକତାର ବଙ୍ଗାଳୀମାନେ ଅତି ଅଳ୍ପ ମୂଲ୍ୟରେ ଓଡ଼ିଶାର ବଡ଼ ବଡ଼ ଜମିଦାରୀ ମାନ ନିଲାମ ନେଇ ରାତାରାତି ଜମିଦାର ପାଲଟିଗଲେ । ଘନ ଘନ ଜମି ବନ୍ଦୋବସ୍ତ କରାଇ କମ୍ପାନୀ ସରକାର ପାଇକ ଦଳେଇ ଓ ଦଳବେହେରାମାନଙ୍କ ରାଜ ପ୍ରଦତ୍ତ ଜାଗିର ଜମି ସେମାନଙ୍କ ମାଲିକାନାରୁ ଛଡ଼ାଇ ନେଲେ ।

### ଇଂରେଜମାନଙ୍କ ଏକଚାଟିଆ ଲୁଣମରା ଅଧିକାର

ଓଡ଼ିଶା ଅଧିକାର କରି ସାରିବା ପରେ ଇଷ୍ଟଇଣ୍ଡିଆ କମ୍ପାନୀ ସରକାର ସାଧାରଣ ପ୍ରଜା ସମୁଦ୍ର ଓ ଚିଲିକାରୁ ଲୁଣ ମାରି ପାରିବେ ନାହିଁ ବୋଲି ଆଇନ ପ୍ରଣୟନ କରି ନିଷେଧାଜ୍ଞା ଜାରି କଲେ । ଫଳରେ ଇଚ୍ଛା ନଥିଲେ ମଧ୍ୟ ଇଂଲଣ୍ଡରୁ ଆମଦାନୀ କରାଯାଉଥିବା ଲୁଣ କିଣିବା ପାଇଁ ଲୋକମାନେ ବାଧ୍ୟ ହେଲେ ।

ଏତଦ୍‌ବ୍ୟତୀତ କୋର୍ଟ, କଚେରୀ, ଥାନା ଓ ଲୁଣ ବ୍ୟବସାୟ ବିଭାଗ ଇତ୍ୟାଦିରେ ଓଡ଼ିଆ ଅମଲା ପରିବର୍ତ୍ତେ ମୁଖ୍ୟତଃ ଓଡ଼ିଶା ବାହାରୁ ଆସିଥିବା ବଙ୍ଗାଳୀ ଓ ମୁସଲମାନମାନେ ନିଯୁକ୍ତି ପାଇଥିଲେ । ଉକ୍ତ କର୍ମଚାରୀମାନେ ସାଧାରଣ ପ୍ରଜାମାନଙ୍କପ୍ରତି କଠୋର ଓ କଦର୍ଯ୍ୟ ବ୍ୟବହାର ପ୍ରଦର୍ଶନ କରିବା ସହ ଅତ୍ୟନ୍ତ ଦୁର୍ନୀତି ପରାୟଣ ଥିଲେ । ତତ୍କାଳୀନ ଅମଲାମାନଙ୍କ ଦୁର୍ନୀତି ସମ୍ବନ୍ଧରେ ଡବ୍ଲୁ. ଇଓ୍ୱେର୍ ତାଙ୍କ ତଦନ୍ତ ବିବରଣୀରେ ଲେଖିଛନ୍ତି ।

### ବକ୍ସି ଜଗବନ୍ଧୁଙ୍କପ୍ରତି ଅନ୍ୟାୟ ଆଚରଣ

ଖୋରଧା ରାଜାଙ୍କ ମୁଖ୍ୟ ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାୟ ସମୃଦ୍ଧିଶାଳୀ ରୋଡ଼ଙ୍ଗ କିଲ୍ଲାର ଅଧିକାରୀ ଥିଲେ । ସେ ଖୋରଧା ଅଞ୍ଚଳରେ ପଦବୀ ଓ ପାହ୍ୟା ଦୃଷ୍ଟିରୁ ଜଣେ ସମ୍ମାନସ୍ପଦ ବ୍ୟକ୍ତି ଥିଲେ ।

କଟକରେ ଅବସ୍ଥାପିତ କଲେକ୍ଟର ଚାର୍ଲସ ଗ୍ରୋମଙ୍କ ବଙ୍ଗାଳୀ କର୍ମଚାରୀଙ୍କ କୃଷ୍ଣଚନ୍ଦ୍ର ସିଂହ ଚାକିରିକାଳ ମଧ୍ୟରେ ଅସତ୍ ଉପାୟରେ ଉପାର୍ଜିତ ଅର୍ଥବଳରେ ରାହାଙ୍ଗ ଜମିଦାରୀ ହସ୍ତଗତ କରି କଟକରେ ବାସ କରୁଥିଲେ । ଏକ ସୁପରିକଳ୍ପିତ ଷଡ଼ଯନ୍ତ୍ର ରଚନା କରି ସେ ବକ୍ସି ଜଗବନ୍ଧୁ ରୋଡ଼ଙ୍ଗ କିଲ୍ଲାର ଅଧିକାରୀ ହେବା ପାଇଁ ମନ ବଳାଇଲେ । ଉକ୍ତ ଷଡ଼ଯନ୍ତ୍ରରେ ତାଙ୍କ ଭାଇ ଗୌରହରି ସିଂହ ଓ ଅନ୍ୟତମ ଆତ୍ମୀୟ ଚନ୍ଦ୍ର ପ୍ରସାଦ ସିଂ ବିଶେଷ ସହଯୋଗ କରିଥିଲେ । ବକ୍ସି ଜଗବନ୍ଧୁ ରୋଡ଼ଙ୍ଗ କିଲ୍ଲାର ଖଜଣା କଟକ କଲେକ୍ଟରଙ୍କ ଟ୍ରେଜେରୀରେ ପଇଠ କରୁଥିଲେ । ହେଲେ କୃଷ୍ଣଚନ୍ଦ୍ର ସିଂହଙ୍କ ପ୍ରସ୍ତାବ କ୍ରମେ କଟକଠାରେ ଖଜଣା ଜମା ନ ଦେଇ ପୁରୀଠାରେ ଖଜଣା ଆରମ୍ଭ କରିଲେ । କାରଣ ପୁରୀ କଟକ ଅପେକ୍ଷା ବକ୍ସିଙ୍କୁ କମ୍ ବାଟ ଏବଂ ସୁବିଧାଜନକ ଥିଲା । ଖଜଣା ଦେବା ଦାଖଲ ସମୟରେ ସରକାରୀ କାଗଜପତ୍ରରେ ରାହାଙ୍ଗ ଓଗେର ବୋଲି ରେକର୍ଡ଼ କରାଯାଇ ବକ୍ସିଙ୍କ ରୋଡ଼ଙ୍ଗ କିଲ୍ଲାର ଖଜଣା ଗ୍ରହଣ କରଗଲା । କୃଷ୍ଣଚନ୍ଦ୍ର ସିଂହଙ୍କ ସୁଚତୁର ଜାଲରେ ବକ୍ସି ନିଜ ଅଜଣାତରେ ଛନ୍ଦି ହୋଇଗଲେ ୧୮୦୯ ମସିହାରେ ସରକାରୀ ରେକର୍ଡ଼ରେ ଥିବା ପ୍ରଗଣା 'ରାହାଙ୍ଗ ଓଗେର' ବିକ୍ରି ପାଇଁ ସରକାରଙ୍କ ବିଜ୍ଞପ୍ତି ଜାରି କରାଗଲା । ଚତୁର କୃଷ୍ଣଚନ୍ଦ୍ର ସିଂହ ଲିଜ୍ ସୂତ୍ରରେ ପୁନର୍ବାର ତାହାକୁ କ୍ରୟ କରି ରୋଡ଼ଙ୍ଗ କିଲ୍ଲା ଉପରେ ଜବରଦସ୍ତି ମାଲିକାନା ସାବ୍ୟସ୍ତ କରିବା ପାଇଁ ନିଜ ଲୋକ ପଠାଇଲେ । ହେଲେ ବକ୍ସିଙ୍କ ଲୋକମାନେ ପ୍ରତିରୋଧ କରିବାରୁ କୃଷ୍ଣଚନ୍ଦ୍ର ସିଂହ ଦଖଲ ନେଇ ପାରିଲେ ନାହିଁ । ୧୮୧୩ ମସିହାରେ କୃଷ୍ଣଚନ୍ଦ୍ର ସିଂହ ପୁନର୍ବାର 'ରୋଡ଼ଙ୍ଗ' କିଲ୍ଲାର ଲିଜ୍ ନେଲେ । ଏ ସମ୍ବନ୍ଧରେ ବକ୍ସି ତତ୍କାଳୀନ ସେଟେଲମେଣ୍ଟ କମିଶନର ରିଚାର୍ଡ଼ସନଙ୍କ ପାଖରେ ଦରଖାସ୍ତ ପେଶ୍ କଲେ । ହେଲେ ତାଙ୍କୁ ନ୍ୟାୟ ମିଳିଲାନି ଏବଂ ନିଜ ଇଚ୍ଛା ବିରୁଦ୍ଧରେ ବକ୍ସି ପରିବାର ଦେବାଳିଆ ହୋଇଗଲେ । ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ପ୍ରତିଶୋଧ ନେବାପାଇଁ ପୁରୁଷ ସିଂହ ବକ୍ସି ଖୋରଧାର ନିଷ୍କର ଜମି ଜାଗିର ହରାଇଥିବା ପାଇକ, ଦଳେଇ ଦଳବେହେରା ଏବଂ ପାଇକ ସର୍ଦ୍ଦାରମାନଙ୍କୁ ଏକତ୍ର କରି ବିଦ୍ରୋହର ଅଗ୍ନି ପ୍ରଜ୍ୱଳିତ କରିଥିଲେ ।

### ପାଇକ ବିଦ୍ରୋହ ଆରମ୍ଭ

୧୮୧୭ ମସିହାରେ ଘୁମୁସର ରାଜା ଶ୍ରୀକର ଭଂଜଙ୍କ ବନ୍ଦୀ ପାଇଁ ଦାୟୀ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ରାଜାଙ୍କ ଅନୁଗତ ୪୦୦ କନ୍ଧ ପ୍ରଜା ବିଭିନ୍ନ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ବାଣପୁର ଅଞ୍ଚଳକୁ ପ୍ରବେଶ କଲେ । ବକ୍ସି ଜଗବନ୍ଧୁ ଏହାକୁ ସୁବର୍ଣ୍ଣ ସୁଯୋଗ ମନେ କରି ପାଇକବାହିନୀ ସହ ବାଣପୁର ଅଗ୍ରସର ହେଲେ । ଉକ୍ତ ବିଦ୍ରୋହରେ ଖୋରଧା ଅଞ୍ଚଳର ପ୍ରାୟ ସମସ୍ତ ଦଳେଇ, ଦଳବେହେରା ଏବଂ ପାଇକ ସର୍ଦ୍ଦାରମାନେ ଯୋଗ ଦେଇ ବିଦ୍ରୋହକୁ ବଳଶାଳୀ କରିଥିଲେ । ବିଦ୍ରୋହୀମାନେ ବାଣପୁର ପୋଲିସ୍ ଥାନାରେ ଅଗ୍ନି ସଂଯୋଗ କରି ପୋଲିସ୍ କର୍ମଚାରୀମାନଙ୍କୁ ମାରି ପକାଇଲେ ଏବଂ ବ୍ରିଟିଶ ଖଜଣା ଖାନା ଲୁଟ୍ କରି ଇଂରେଜ ଓ ଇଂରେଜ ସମର୍ଥକମାନଙ୍କୁ ନିର୍ମମ ଭାବରେ ହତ୍ୟା କଲେ । ବାଣପୁରଠାରେ ଅବସ୍ଥାପିତ ବ୍ରିଟିଶ ଲୁଣ ଏଜେଣ୍ଟ ବେଡ଼ର ସାହେବ ବିଦ୍ରୋହୀମାନଙ୍କ କବଳରୁ ଅଳ୍ପକେ ଖସି ଯାଇଥିଲେ ମଧ୍ୟ ଚିଲିକାରେ ଥିବା ତାଙ୍କ ବାଣିଜ୍ୟ ତରୀକୁ ବିଦ୍ରୋହୀମାନେ ଲୁଟ୍

କଲେ । ବାଣପୁରଠାରୁ ଖୋରଧା ଆଡ଼କୁ ବିଦ୍ରୋହୀମାନେ ଅଗ୍ରସର ହେଉଥିବା ଖବର ପାଇ ଇଂରେଜମାନେ ଭୟରେ ଖୋରଧାରୁ ପଳାୟନ କଲେ । ରଥିପୁର ଗ୍ରାମରେ ଥିବା ବ୍ରିଟିଶ ସାହାଯ୍ୟକାରୀ ଦେଶଦ୍ରୋହୀ ଚରଣ ପଟ୍ଟନାୟକଙ୍କୁ ବିଦ୍ରୋହୀମାନେ ନିର୍ମମ ଭାବରେ ହତ୍ୟା କଲେ । କ୍ରମେ ଖୋରଧା ନିକଟବର୍ତ୍ତୀ ପାଞ୍ଚଗଡ଼ ଓ ବୋଲଗଡ଼କୁ ବିଦ୍ରୋହ ବ୍ୟାପିଗଲା । ହେଲେ ଗଡ଼ଜାତ ରାଜ୍ୟର ରାଜାମାନଙ୍କ ସହଯୋଗର ଅଭାବ ଯୋଗୁଁ ପାଇକ ବିଦ୍ରୋହ ସେ ଅଞ୍ଚଳକୁ ବ୍ୟାପି ପାରିନଥିଲା ।

କଟକରେ ଅବସ୍ଥାପିତ ମାଜିଷ୍ଟ୍ରେଟ ଇମ୍ପେ ସାହେବ ଇଣ୍ଟେଲିଜେନ୍ସ ବିଭାଗର ଗୁପ୍ତ ଖବର ପାଇ ବିଦ୍ରୋହ ଦମନ ପାଇଁ ଲେଫ୍ଟନାଣ୍ଟ ପ୍ରିଡ଼କ୍ସଙ୍କୁ ଖୋରଧା ଏବଂ ଲେଫ୍ଟନାଣ୍ଟ ଫାରିସ୍ ସାହେବଙ୍କୁ ପିପିଲି ପ୍ରେରଣ କଲେ । ନିଜେ ଇମ୍ପେ ସାହେବ ଲେଫ୍ଟନାଣ୍ଟ ଟ୍ରାଭିସ୍ ଓ କେତେକ ଇଂରେଜ ସିପାହୀଙ୍କ ସହ ୧୮୧୭ ମସିହା ଅପ୍ରେଲ ୧ ତାରିଖରେ ଖୋରଧା ନିକଟବର୍ତ୍ତୀ ଗଙ୍ଗପଡ଼ାଠାରେ ପହଞ୍ଚି ବିଦ୍ରୋହୀମାନଙ୍କ ରଣ ସଜ୍ଜାରେ ଭୟଭୀତ ହୋଇ କଟକ ଫେରିଯାଇ ଏକ ରିପୋର୍ଟ କରିଥିଲେ ।

ରଥିପୁର ଗ୍ରାମରେ ଥିବା ବ୍ରିଟିଶ ସାହାଯ୍ୟକାରୀ ଦେଶଦ୍ରୋହୀ ଚରଣ ପଟ୍ଟନାୟକଙ୍କୁ ବିଦ୍ରୋହୀମାନେ ନିର୍ମମ ଭାବରେ ହତ୍ୟା କଲେ । କ୍ରମେ ଖୋରଧା ନିକଟବର୍ତ୍ତୀ ପାଞ୍ଚଗଡ଼ ଓ ବୋଲଗଡ଼କୁ ବିଦ୍ରୋହ ବ୍ୟାପିଗଲା । ହେଲେ ଗଡ଼ଜାତ ରାଜ୍ୟର ରାଜାମାନଙ୍କ ସହଯୋଗର ଅଭାବ ଯୋଗୁଁ ପାଇକ ବିଦ୍ରୋହ ସେ ଅଞ୍ଚଳକୁ ବ୍ୟାପି ପାରିନଥିଲା ।

ଲେଫ୍ଟନାଣ୍ଟ ଫାରିସ୍ଙ୍କୁ ଗଙ୍ଗପଡ଼ାଠାରେ ବିଦ୍ରୋହୀ ପାଇକମାନେ ଗୁଳି କରି ହତ୍ୟା କଲେ । ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପାଞ୍ଚ ହଜାର ପାଇକ ଲେଫ୍ଟନାଣ୍ଟ ପ୍ରିଡ଼ସ୍ଙ୍କୁ ଖୋର୍ଦ୍ଧାଠାରେ ଆକ୍ରମଣ କରିବା ପାଇଁ ଅଗ୍ରସର ହେବା ଦେଖି ସେ କୌଣସି ମତେ ନିଜ ପ୍ରାଣ ବଞ୍ଚାଇ ଭୟରେ ପିପିଲି ବାଟ ଦେଇ କଟକକୁ ଫେରିଗଲେ ।

ଅପ୍ରେଲ ୭ ତାରିଖ ୧୮୧୭ରେ ବିଦ୍ରୋହୀମାନେ ପିପିଲି ଅଧିକାର କରିବା ପରେ ଗଡ଼ ପଦ୍ମପୁରର ରାଜା ବଳଭଦ୍ର ଛୋଟରାୟ ବିଦ୍ରୋହରେ ଯୋଗ ଦେଲେ । ପୁରୀ ସହରକୁ ବିଦ୍ରୋହୀମାନଙ୍କ କବଳରୁ ରକ୍ଷା କରିବା ପାଇଁ ଏବଂ ରାଜା ଦ୍ୱିତୀୟ ମୁକୁନ୍ଦ ଦେବଙ୍କ ଗତିବିଧି ଲକ୍ଷ୍ୟ କରିବା ପାଇଁ କ୍ୟାପ୍ଟେନ୍ ଉଇଲଙ୍ଗଟନ୍ଙ୍କୁ ପ୍ରେରଣ କରାଗଲା । ଅପ୍ରେଲ ୯ ତାରିଖ ୧୮୧୭ ମସିହାରେ କ୍ୟାପ୍ଟେନ ଲେ. ଫେବରେ ୫୫୦ ଜଣ ସିପାହୀଙ୍କ ସହ ଖୋରଧା ଯାତ୍ରା କରି ବିନା ପ୍ରତିରୋଧରେ ଖୋର୍ଦ୍ଧା ପୁନଃ ଅଧିକାର କଲେ । ଠିକ୍ ସେହିଦିନ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ବିପୁଳ ସଂଖ୍ୟକ ପାଇକ ଲୋକନାଥ ଘାଟ ଦେଇ ପୁରୀରେ ପ୍ରବେଶ କଲେ । ପୁରୀରେ ଥିବା ଇଂରେଜ କର୍ମଚାରୀମାନେ ଭୟରେ କଟକ ପଳାୟନ କଲେ । ଜଗନ୍ନାଥ ମନ୍ଦିରର ପଣ୍ଡା ଓ ସେବାୟତଗଣ ଓଡ଼ିଶାରୁ ବ୍ରିଟିଶ ଶାସନ ଲୋପ ହେଲା ବୋଲି ସର୍ବସାଧାରଣରେ ଘୋଷଣା କଲେ । ରାଜା ଦ୍ୱିତୀୟ ମୁକୁନ୍ଦ ଦେବଙ୍କୁ ଖୋର୍ଦ୍ଧା ଗାଦିରେ ପୁନର୍ବାର ଅଭିଷିକ୍ତ କରିବା ପ୍ରସ୍ତାବ ନେଇ ବକ୍ସି ଜଗବନ୍ଧୁ ଏବଂ ବିଦ୍ରୋହୀ ପାଇକମାନେ ଶ୍ରୀନଅରକୁ ଗଲେ । ହେଲେ ବକ୍ସି ଜଗବନ୍ଧୁଙ୍କ ପ୍ରସ୍ତାବରେ ରାଜି ହେବା ପରିବର୍ତ୍ତେ ଗୁପ୍ତ ପତ୍ର ଜରିଆରେ ରାଜା ବ୍ରିଟିଶ କର୍ତ୍ତୃପକ୍ଷଙ୍କୁ ସାମରିକ ସାହାଯ୍ୟ ପାଇଁ ନିବେଦନ କରିଥିଲେ ।

ବିଦ୍ରୋହ ଦମନ ପାଇଁ ବ୍ରିଟିଶ ସରକାର ପ୍ରଥମେ ଖୋରଧା, ଲେମ୍ବାଇ ପ୍ରଗଣା, ପୁରୀ ଓ କୋଠ ଦେଶ ଅଞ୍ଚଳରେ ସାମରିକ ଆଇନ ଜାରି କଲେ । ମେଜର ଜେନେରାଲ ଗେବିଏଲ, ମାଟ୍ରିନଡେଲ୍ ମିଲିଟାରୀ କମିଶନର ଭାବରେ ନିଯୁକ୍ତି ପାଇ କଟକରେ ଅବସ୍ଥାନ କଲେ । ଅପ୍ରେଲ୧୬ ତାରିଖ ୧୮୧୭ ମସିହାରେ କ୍ୟାପ୍ଟେନ ଲେ' ଫେବରେ ଖୋର୍ଦ୍ଧାଠାରୁ ପୁରୀଯାଇ ରାଜା ଦ୍ୱିତୀୟ ମୁକୁନ୍ଦ ଦେବଙ୍କୁ ଗିରଫ୍ ଓ ବନ୍ଦୀ କଲେ । ଅପ୍ରେଲ ୨୮ ତାରିଖ ୧୮୧୭ରେ ମେଜର ହାମିଲଟନ୍ ରାଜା ଦ୍ୱିତୀୟ ମୁକୁନ୍ଦ ଦେବ ଏବଂ ତାଙ୍କ ପୁତ୍ରକୁ ବାରବାଟୀ ଦୁର୍ଗରେ ବନ୍ଦୀ କରି ରଖିଲେ । ଏହା ସତ୍ତ୍ୱେ ବିଦ୍ରୋହ ଗୋପ, ତରଣ, କୁଜଂଗ, ପଟ୍ଟାମୁଣ୍ଡାଇ ଏବଂ ଅସୁରେଶ୍ୱର ଅଞ୍ଚଳକୁ ବ୍ୟାପିଗଲା । ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ବିଦ୍ରୋହୀ ପାଇକମାନେ ଇଂରେଜ ସମର୍ଥକ ଜମିଦାର ଓ ଅମଲାମାନଙ୍କ ସଂପତ୍ତି ଲୁଟ୍ କଲେ । ଗୋପ ଅଞ୍ଚଳରେ କରୁଣାକର ସର୍ଦ୍ଦାରଙ୍କ ନେତୃତ୍ୱରେ ପାଇକମାନେ ଥାନା ଆକ୍ରମଣ କରି ପୋଲିସ୍ମାନଙ୍କୁ ତଡ଼ି ଦେଇଥିଲେ । କ୍ୟାପ୍ଟେନ୍ ଫେଡ୍ଫୁଲ୍ ଏଠାରେ ବିଦ୍ରୋହ ଦମନ କରିବା ପାଇଁ ସମର୍ଥ ହୋଇଥିଲେ ।

କୁଜଂଗ ଅଞ୍ଚଳରେ ରାଜା ମଧୁସୂଦନ ଷେଣ୍ଢ ପାଇକମାନଙ୍କୁ ଗୁପ୍ତରେ ସାହାଯ୍ୟ କରିଥିଲେ । କୁଜଂଗରେ ସର୍ବଶ୍ରୀ ମଧୁସୂଦନ ମଙ୍ଗରାଜ, କାମଦେବ ପଟ୍ଟଯୋଷୀ, ନାରାୟଣ ପରମଗୁରୁ ପ୍ରଭୃତି ପାଇକ ବିଦ୍ରୋହର ନେତୃତ୍ୱ ନେଇଥିଲେ । କ୍ୟାପ୍ଟେନ କେନେଟ୍ ୧୩ ସେପ୍ଟେମ୍ବର ୧୮୧୭ ମସିହାରେ ଦୁଇ ହଜାର ବ୍ରିଟିଶ୍ ସୈନ୍ୟଙ୍କ ସହ କୁଜଂଗ ଯାତ୍ରା କରି ବାଲୁକେଶ୍ୱର ଦାସ ଓ କୃପାସିନ୍ଧୁ ଛାମୁକରଣଙ୍କ ସହାୟତାକ୍ରମେ ବିଦ୍ରୋହ ଦମନ କରିବା ପାଇଁ ସମର୍ଥ ହୋଇଥିଲେ ।

### ବିଦ୍ରୋହୀମାନଙ୍କ ବିଚାର ଓ ଦଣ୍ଡ

ଭବିଷ୍ୟତରେ ଯେଭଳି ଆଉ ଏକ ବିଦ୍ରୋହ ସଂଗଠିତ ନହୁଏ ସେଥିଲାଗି ସରକାର କଠୋର ପଦକ୍ଷେପ ଗ୍ରହଣ କରିଥିଲେ । ବିଦ୍ରୋହୀ ଓ ଯୁଦ୍ଧବନ୍ଦୀମାନଙ୍କ ବିଚାର ପାଇଁ ୱାଲଟର ଇଓୟର ଏବଂ ଗ୍ରେବିଏଲ୍ ମାଟ୍ରିନ୍ ଡେଲଙ୍କୁ ନେଇ ଏକ କମିଟି ଗଠନ କରାଗଲା । ପାଇକ ବିଦ୍ରୋହର କାରଣ ନିର୍ଦ୍ଦେଶ ଏବଂ ଭବିଷ୍ୟତରେ ଯେଭଳି ପୁନର୍ବାର ବିଦ୍ରୋହର ଅଭ୍ୟୁଦୟ ନ ଘଟେ ସେଥିଲାଗି ବିଭିନ୍ନ ପ୍ରସ୍ତାବ ସହ ରିପୋର୍ଟ ପ୍ରସ୍ତୁତ କରିବା ପାଇଁ ସେମାନଙ୍କୁ ଆଦେଶ ଦିଆଗଲା ।

ରାଜା ଦ୍ୱିତୀୟ ମୁକୁନ୍ଦ ଦେବ ନଭେମ୍ବର ୩୦ ତାରିଖ ୧୮୧୭ରେ କାରାଗାର ମଧ୍ୟରେ ମୃତ୍ୟୁବରଣ କଲେ । କୁଜଂଗର ରାଜା ମଧୁସୂଦନ ଷେଣ୍ଟ ଆତ୍ମସମର୍ପଣ କରି କେତେକ ବିଦ୍ରୋହୀ ନେତାଙ୍କୁ ଧରାଇବାରେ ବ୍ରିଟିଶ ସରକାରଙ୍କୁ ସାହାଯ୍ୟ ସହଯୋଗ କରିଥିବାରୁ ତାଙ୍କୁ ମୁକ୍ତି ଦିଆଗଲା । ବହୁ ବିଦ୍ରୋହୀଙ୍କୁ ରାଜକ୍ଷମା ଦିଆଯାଇଥିଲେ ମଧ୍ୟ ବକ୍ସି ଜଗବନ୍ଧୁ, କୃଷ୍ଣଚନ୍ଦ୍ର ବିଦ୍ୟାଧର, ଗୋପାଳ ଛୋଟରାୟ, ପୀତବାସ ମଙ୍ଗରାଜ, ବିଷ୍ଣୁ ପାଇକରାୟ ଏବଂ ପିଣ୍ଡିକି ବାହୁବଳେନ୍ଦ୍ର ପ୍ରଭୃତି ପାଇକ ନେତାମାନଙ୍କୁ ବ୍ରିଟିଶ ସରକାର ରାଜକ୍ଷମା ଘୋଷଣାରୁ ବାଦ୍ ଦେଇଥିଲେ । ସେମାନଙ୍କୁ ମୃତ ବା ଜୀବନ୍ତ ଭାବରେ ଧରାଇ ଦେଲେ କମ୍ପାନୀ ସରକାର ଅର୍ଥ ପୁରସ୍କାର ଦେବାପାଇଁ ଘୋଷଣା କରିଥିଲେ । ୧୨୩ ଜଣ ପାଇକ ନେତାଙ୍କୁ ଦ୍ୱୀପାନ୍ତର ଦଣ୍ଡ, କୁଜଂଗର ବାମଦେବ ପଟ୍ଟଯୋଷୀ ଏବଂ ନାରାୟଣ ପରମଗୁରୁଙ୍କୁ ୧୪ ବର୍ଷ ଲେଖାଏଁ ସଶ୍ରମ କାରାଦଣ୍ଡ ଏବଂ ଦେଶଦ୍ରୋହୀ ଚରଣ ପଟ୍ଟନାୟକର ହତ୍ୟାକାରୀ ପର୍ଶୁରାମ ରାଉତରାୟଙ୍କୁ ମୃତ୍ୟୁଦଣ୍ଡ ଦିଆଯାଇଥିଲା ।

ବକ୍ସି ଜଗବନ୍ଧୁଙ୍କ ଆତ୍ମସମର୍ପଣ

ଇଂରେଜ ସରକାରଙ୍କ ସମସ୍ତ ମୁଣ୍ଡବ୍ୟଥାର କାରଣ ଏବଂ ପାଇକ ବିଦ୍ରୋହର ମୁଖ୍ୟନେତା ବକ୍ସି ଜଗବନ୍ଧୁ ଖୋର୍ଦ୍ଧାରୁ ପଳାୟନ କରି ଘୁମୁସର ଜଙ୍ଗଲରେ ଆତ୍ମଗୋପନ କଲେ । ଘୁମୁସରଠାରୁ ଶ୍ୱଶୁରଘର ସେରଗଡ଼ ଯାଇ ସେଠାରେ କିଛି ଦିନ ଅବସ୍ଥାନ ପରେ ସେ ବୌଦ ଓ ଦଶପଲ୍ଲା ଜଂଗଲ ଅଞ୍ଚଳକୁ ଚାଲି ଗଲେ । ତାଙ୍କୁ ମୃତ ବା ଜୀବନ୍ତ ଅବସ୍ଥାରେ ଧରାଇ ଦେଲେ ପୁରସ୍କାର ଦିଆଯିବ ବୋଲି ବ୍ରିଟିଶ ସରକାର ଘୋଷଣା କଲେ । ବକ୍ସିଙ୍କୁ ଗିରଫ୍ କରିବା ପାଇଁ ମେଜର ରୋଗ୍‌ସେଜ୍ ବୌଦରାଜା ଚନ୍ଦ୍ରଶେଖର ଦେବଙ୍କ ସହ ସଂପର୍କ ସ୍ଥାପନ କରିବା ଖବର ପାଇ ବକ୍ସି ପୁନର୍ବାର ଘୁମୁସର ଜଙ୍ଗଲରେ ଲୁଚି ରହିଲେ । ଏଭଳି ଦୁର୍ଦ୍ଦିନରେ ବକ୍ସିଙ୍କ ଭରଣପୋଷଣ ପାଇଁ ଖୋରଧା ବାସୀ ଆବଶ୍ୟକୀୟ ଅର୍ଥ ଯୋଗାଇ ଦେବା ଘଟଣାରୁ ତାଙ୍କ ଜନପ୍ରିୟତାର ପ୍ରମାଣ ସୁସ୍ପଷ୍ଟ ଅଟେ । ବ୍ରିଗେଡ଼ିୟର ଜେନେରାଲ ଥୋମାସ୍ ଗୁପ୍ତ ଖବର ପାଇ ବକ୍‌ସୀ ଅବସ୍ଥାନ କରୁଥିବା ଘୁମୁସର ଅଞ୍ଚଳର ଏକ କନ୍ଧ ପଲ୍ଲୀକୁ ଆକସ୍ମିକ ଚଢ଼ାଉ କରିଥିଲେ ମଧ୍ୟ ବକ୍ସି ଜଗବନ୍ଧୁଙ୍କୁ ଧରିବାରେ ବିଫଳ ହୋଇଥିଲେ । ଶେଷକୁ ଅନ୍ୟ ଉପାୟ ନପାଇ ବ୍ରିଟିଶ କମିଶନର୍ ଏକ ସରକାରୀ ଘୋଷଣାନାମା ଜାରି କରିବାରୁ ବକ୍ସି ଆତ୍ମସମର୍ପଣ କଲେ । ତାଙ୍କ ଜୀବନପ୍ରତି କୌଣସି ଆଶଙ୍କା ନଥିବାର ପ୍ରତିଶ୍ରୁତି ଦେଇଥିଲେ । ହେଲେ ବକ୍ସି ଉକ୍ତ ଘୋଷଣାନାମାକୁ କର୍ଣ୍ଣପାତ କରିନଥିଲେ ।

ପରିଶେଷରେ ବକ୍ସିଙ୍କ ଆତ୍ମସମର୍ପଣ ନିମିତ୍ତ ଇଂରେଜମାନେ ଏକ ଅଭିନବ ପନ୍ଥା ଅନୁସରଣ ପୂର୍ବକ ୧୮୧୯ ମସିହାରେ ତାଙ୍କର ଦୁଇପତ୍ନୀ, ନାବାଳକ ପୁତ୍ର, ପୋଷ୍ୟ ପୁତ୍ର, ଗୁମାସ୍ତା, ଚାକର ପ୍ରଭୃତିଙ୍କୁ ବାରବାଟୀ ଦୁର୍ଗରେ ବନ୍ଦୀ କରି ରଖିଲେ । ତଥାପି ବକ୍ସି ଇଂରେଜମାନଙ୍କ ନିକଟରେ ମୁଣ୍ଡ ନୁଆଁଇଲେ ନାହିଁ । ତେଣୁ ଇଂରେଜ ସରକାର ବାଧ୍ୟ ହୋଇ ୧୮୨୦ ମସିହାରେ ଜଗବନ୍ଧୁଙ୍କ ପରିବାରକୁ ମୁକ୍ତି ଦେଲେ ।

ଇଂରେଜ କମିଶନର୍ ଟି. ପାକେନ୍‌ହାମ୍ ବ୍ରିଟିଶ୍ ସରକାରଙ୍କ ସର୍ତ୍ତରେ ରାଜି ହୋଇ ଆତ୍ମସମର୍ପଣ କରିବା ପାଇଁ ବକ୍ସିଙ୍କୁ ପ୍ରବର୍ତ୍ତାଇବା ନିମିତ୍ତ ନୟାଗଡ଼ ରାଜାଙ୍କ ପାଖକୁ ଏକ ପରୱାନା ପଠାଇଲେ । ସର୍ତ୍ତଥିଲା ଯେ, ବକ୍ସି ଜଗବନ୍ଧୁଙ୍କ ଆଜୀବନ ଭରଣପୋଷଣ ପାଇଁ ବ୍ରିଟିଶ ସରକାର ମାସିକ ୧୫୦ ଟଙ୍କା ଭତ୍ତା ଦେବେ । ବକ୍ସି ତାଙ୍କ ପରିବାରବର୍ଗଙ୍କ ସହ କଟକରେ ଅବସ୍ଥାନ କରିବେ । କଟକ ବାହାରକୁ ଯିବା ପାଇଁ ହେଲେ ବକ୍ସିଙ୍କୁ ଇଂରେଜ କମିଶନରଙ୍କ ଅନୁମତି ନେବା ପାଇଁ ପଡ଼ିବ । ଉକ୍ତ ସର୍ତ୍ତରେ ବକ୍ସିଙ୍କ ମର୍ଯ୍ୟାଦାହାନୀ ଭଳି କୌଣସି କଥା ନ ଥିବାରୁ ନୟାଗଡ଼ ରାଜା ବକ୍ସି ଜଗବନ୍ଧୁଙ୍କୁ ଆତ୍ମସମର୍ପଣ କରିବା ପାଇଁ ପରାମର୍ଶ ଦେଲେ । ୧୮୨୫ ମସିହା ମଇ ମାସ ୨୫ ତାରିଖ ଦିନ ବିକ୍ସି ଜଗବନ୍ଧୁ ଆତ୍ମ ସମର୍ପଣ କରି କଟକରେ ପରିବାର ସହ ଅବସ୍ଥାନ କଲେ । ଶେଷରେ ଉକ୍ତ ଐତିହାସିକ ପୁରୁଷ ୧୮୨୯ ମସିହା ଜାନୁଆରୀ ୨୪ ତାରିଖ ଦିନ ଇହଲୀଳା ସମ୍ବରଣ କଲେ । ବକ୍ସିଙ୍କ ପରଲୋକ ଗମନ ପରେ ସର୍ତ୍ତ ଅନୁଯାୟୀ ବ୍ରିଟିଶ ସରକାର ପ୍ରଦାନ କରୁଥିବା ଭରଣପୋଷଣ ପେନ୍‌ସନ ବନ୍ଦ କରି ଦିଆଯାଇଥିଲା ।

ସରକାରୀ ଓକିଲ
୩୪୨/ବି, ଜାଗମରା (ବରବାରି)
ଖଣ୍ଡଗିରି, ଭୁବନେଶ୍ୱର-୩୦

